ନିଜ ଠିକଣା

ଗଣେଶ୍ୱର ମିଶ୍ର

ପ୍ରଥମ ପ୍ରକାଶ
ଗଣେଶ ଚତୁର୍ଥୀ ୨୦୦୧

ପ୍ରକାଶକ
ପ୍ରଜ୍ଞାଲୋକ
ଚଳମାଳିସାହି, ପୁରୀ-୨

ମୁଦ୍ରଣ
ରୟାଲ ଅଫସେଟ୍
ଚଳମାଳିସାହି, ପୁରୀ-୨

ମୂଲ୍ୟ : ଷାଠିଏ ଟଙ୍କା

**NIJA THIKANA** by Ganeswar Mishra, Published by Prajnaloka, Puri, 2001 Printed at Royal Offset, Puri. Rupees Sixty only.

# ସୂଚନା

ମୋ ନିଜ ସମ୍ପର୍କରେ ଲିଖିତ କେତୋଟି ରଚନାର ସଂକଳନ 'ନିଜ ଠିକଣା' । ମୋତେ ଆଚ୍ଛନ୍ନ ରଖିଥିବା କେତୋଟି ଅନୁଭୂତିର ପ୍ରକାଶ ଘଟିଛି ଏଥିରେ ।

ଏଇ ରଚନା ଗୁଡିକ କ୍ରମାନ୍ୱୟରେ ଲିଖିତ ହୋଇନଥିଲେ- ମୋ ଜୀବନର ପୂର୍ଣ୍ଣାଙ୍ଗ ପରିଚୟ ଦେବା ପାଇଁ । ଆତ୍ମଜୀବନୀର ସଂପୂର୍ଣ୍ଣତା ଏଥିରେ ଆଶା କରାଯାଇନପାରେ ।

ଜଣେ ସାଧାରଣ ମଣିଷର ସାଧାରଣ ଅନୁଭୂତି ସାହିତ୍ୟର ଉପଜୀବ୍ୟ ହୋଇପାରେ - ଏଇ ବିଶ୍ୱାସ ଉପରେ ଆଧାରିତ ମୋର ଏଇ ରଚନା ସବୁ ।

-ଲେଖକ

## ଲେଖକଙ୍କ ଅନ୍ୟାନ୍ୟ ବହି

ସାମୁଦ୍ରିକ (ଉପନ୍ୟାସ)
ଆରୋହୀ (ଉପନ୍ୟାସ)
ନେତା (ଉପନ୍ୟାସ)
ସକାଳର ମୁହଁ (ଉପନ୍ୟାସ)
ଅନ୍ଧାର (ଗଳ୍ପ ସଂକଳନ)
ମଧୁ ମିଶ୍ରଙ୍କ ଶବ (ଗଳ୍ପ ସଂକଳନ)
କ୍ୟାଣ୍ଟର୍‌ବରୀ କାହାଣୀ (ଭ୍ରମଣ)
ସମୁଦ୍ର ସେପାରେ (ଭ୍ରମଣ)
ନିଜ ଦେଶ ଅନ୍ୟ ଦେଶ (ଭ୍ରମଣ)
ଲାଲୁ ବାବୁଙ୍କ କୋଠି (ଫିଚର୍ ସଂକଳନ)
ରୁଖ୍ ପାହାଡ଼ରେ ବାଘ (ଫିଚର୍ ସଂକଳନ)
ଜାହାନାରା ଆତ୍ମକାହାଣୀ (ଅନୁବାଦ)
ବିଲାତରେ ବାବୁ ଓ ପାପୁ (ଶିଶୁ ସାହିତ୍ୟ)
ଓଡ଼ିଆ ଉପନ୍ୟାସ ଗ୍ରନ୍ଥସୂଚୀ ଓ ପରିଚୟ (ସଂପାଦନା)
ପ୍ରସଙ୍ଗ କ୍ରମେ

## ସୂଚୀପତ୍ର

# ବୋଉ

ମାଟି ଚଟାଣ ସନ୍ତରା ମସିଣାଟାରେ ଘୋଡ଼ା ହୋଇ ଥୁଆ ହୋଇଚି ଶବଟିଏ । ବୁଢ଼ୀଟିଏ 'ମୋ ଗଉରୀ' 'ମୋ ଗଉରୀ' ଚିତ୍କାର କରି ସେଇ ଶବ ପାଖରେ ଗଡ଼ି ଗଡ଼ି କାନ୍ଦୁଛି । ଆଉ କେତେଜଣ ମାଇପି ଲୋକ ତାକୁ କ'ଣ ବୁଝାଇବାକୁ ଚେଷ୍ଟା କରୁଛନ୍ତି । ସେ ମୋଟେ ବୁଝୁ ନାହିଁ । ସେମିତି ଗଡ଼ି ଗଡ଼ି କାନ୍ଦୁଛି ।

ଟିକିଏ ଦୂରରେ ଚୁପ୍‌ଚାପ୍ ଠିଆ ହୋଇ ମୁଁ ଦେଖୁଛି ଏଦୃଶ୍ୟ । କାନ୍ଦୁ ନାହିଁ । କିଛି ସମୟପରେ ଶବଟିକୁ ଚାରିପାଞ୍ଚଜଣ ଲୋକ ବୋହି ନେଇଗଲେ ବାହାରକୁ । ତା'ପରେ କ'ଣ ସବୁ ଘଟିଗଲା । ମୁଁ ଆସି ବସିଲି ବାଡ଼ି ଘରେ । ପଡ଼ିଶା ଘର ମାଇପି ଜଣେ ଛୋଟ ଗିନାଟିରେ କ'ଣ ଟିକେ ଆଣିଥିଲା ମୋ ଖାଇବା ପାଇଁ ।

ସେତେବେଳେ ମୋତେ ବୋଧହୁଏ ଚାରିବର୍ଷ । ଶବଟି ଥିଲା ମୋ ବୋଉର । ଚିତ୍କାର କାରି ଗଡୁଥିବା ସେ ବୁଢ଼ୀଟି ଥିଲା ମୋ ଆଈ । ପୁରୀ ଜିଲ୍ଲାର ଶ୍ରୀପୁରୁଷୋତ୍ତମ ପୁରରେ ପ୍ରାୟ ଛୟାଳିଶି ବର୍ଷତଳେ ଘଟିଥିଲା ଘଟଣାଟି ।

ସେଇ ଗ୍ରାମରେ ମୋର ଜନ୍ମ । ସନ୍ତାନଟିଏ ଜନ୍ମ ହେବାର ସମୟ ହେଲେ ମାଆମାନେ ସେମାନଙ୍କ ବାପଘରକୁ ଆସିବା ଏକ ପ୍ରଥା । ସେଇ ପ୍ରଥା ଅନୁସାରେ ମୋର ଜନ୍ମ ହୋଇଥିଲା ମୋର ମାମୁଁ ଘରେ । ଯେଉଁ ବଖରାରେ ମୋ ବୋଉ ମରିଥିଲା, ସେଇ ବଖରାର କାନ୍ଥରେ ମୋ ପାଇଁ ତିଆରି ହୋଇଥିଲା ଷଠୀଘର - ମାଟିରେ ବର୍ଗାକାର ଚିହ୍ନଟିଏ ଓ ସେଥିରେ କେତୋଟି କଉଡ଼ି । ବର୍ତ୍ତମାନ ମୋ ମାମୁଁ ଘରଟି ଭାଙ୍ଗି ପରିଣତ ହୋଇଛି ଡିହରେ । ମୋ ଜନ୍ମର ସ୍ମାରକୀ ଷଠୀ ଘରଟି ମାଟିରେ ମିଶି ଯାଇଛି ।

ବୋଉ ମଲାବେଳେ ମୁଁ କାନ୍ଦିନ ଥିଲି ସିନା, କିନ୍ତୁ ବୟସ ଯେତେଯେତେ ଅଧିକ ହୋଇଛି, ସେତିକି ସେତିକି ଅଧିକ ମୋ ଆଖିରୁ ଲୁହ ବୋହିଛି ବୋଉ ପାଇଁ ।

ସେ ଲୁହ ଅବଶ୍ୟ ମୁଁ କାହାକୁ ଦେଖାଇ ନାହିଁ ।

ବୋଉର ଛବି ମୋର ମନେ ନାହିଁ । ଝାପ୍‌ସା ଝାପ୍‌ସା ବେଳେବେଳେ କିଛି କିଛି ଦିଶିଯାଏ-କୁହୁଡ଼ି ଭିତରେ କାହାର ଆତଯାତ ଦେଖିବା ପରି । ବୋଉ ଛାଞ୍ଚୁଣୀରେ ଘର ଓଳାଉଛି, ମୋତେ ଲାଉ କରିଛି । ମୁଁ, ଆଈ ଓ ବୋଉ ଆଈଘର ଦାଣ୍ଡ ପିଣ୍ଡାରେ ଶୀତ ଦିନ ସଂଜରେ ବସି ଉହ୍ନେଇରେ ନିଆଁ ପୋଉଁଛୁ । ବାହାରେ ଅନ୍ଧାର ଓ ଭୟ । ଦୂରରେ ହୁକେ ହୋ ବୋବାଉଛନ୍ତି ବିଲୁଆମାନେ । ମୋ ପିଚାରେ ଗୋଟିଏ ବଥ ହୋଇଛି ଯେ ଧକ୍ ଧକ୍ ହେଉଛି ଖୁବ୍ ।

ବୋଉ ଉପରକୁ ମୁଁ ଫିଙ୍ଗି ଦେଉଛି ଭୁଜା ଭୋଗେଇଟା । ରାଗିଛି କୌଣସି କାରଣରୁ । 'ମରିଯା' ବୋଲି ବୋଉକୁ ଗାଳି ଦେଉଚି ।

ମଲାବେଳେ ମୋ ବୋଉର ବୟସ କେତେ ହୋଇଥିଲା, ମୋତେ ଜଣା ନାହିଁ । ନାନାଙ୍କୁ କେବେଦିନେ ବୋଉ କଥା ପଚାରି ନଥିଲି । ନନା ମରିବାର ଅଠରବର୍ଷ ହୋଇଗଲାଣି ଯା ଭିତରେ- ମୋତେ ପଚାଶ ପୁରିଗଲା । ମୋ ବୋଉର ବଡ଼ଭଉଣୀ ମୋ ମାଉସୀ ନାନୀ ଅବଶ୍ୟ ଅଛନ୍ତି । ତାଙ୍କୁ ଅଶୀ ଉପରେ । ବର୍ଷ ତାରିଖ ମନେ ରଖି ସମୟର ରେଖା ଗଣିବାର ଉପାୟ ତାଙ୍କୁ ଜଣା ନାହିଁ । ମଲାବେଳେ ବୋଉର ବୟସ କେତେ ହୋଇଥିଲା, ସେ ବି ଅନୁମାନ କରି କହନ୍ତି ଯାହା ।

ବୋଉର ଫଟୋ କି ଜାତକ ନାହିଁ ମୋ ପାଖରେ । ମୋ ବୋଉ ପହିଲିପାଳି ବେଳେ ଆଣିଥିବା ପେଡ଼ିଟିଏ ବହୁବର୍ଷ ଯାଏଁ ପୁରୀ ପଥୁରିଆ ସାହୀ ଘରେ ଭାଡ଼ି ଉପରେ ଥୁଆ ହୋଇଥିଲା । ଆଉ ନାହିଁ । ମୋ ବୋଉର ପିନ୍ଧା ରୂପାମଲ ଦୁଇଟା ବହୁଦିନ ଯାଏଁ ନନା ସାଇତି ରଖିଥିଲେ କାଠ ଆଲମିରାରେ । ସେ ଦୁଇଟା ବି ଆଉ ନାହିଁ ।

ହଠାତ୍ କିନ୍ତୁ କେତେବର୍ଷ ତଳେ ପୁରୁଣା ଅଳିଆ ଭିତରୁ ପାଇଲି ମାଟିଆ କାଗଜ ଖଣ୍ଡେ । ସେଥିରେ ଲେଖାଥିଲା, 'ସରଳାର୍ଥ' ନୋଟ । ଶ୍ରୀମତୀ ଗୌରୀ ଦେବୀ । ତୃତୀୟ ଶ୍ରେଣୀ ଛାତ୍ରୀ । ଶ୍ରୀପୁରୁଷୋତ୍ତମପୁର ଉ:ପ୍ରା: ବିଦ୍ୟାଳୟ । ୧୯୩୫ । (ତଳେ ଗୋଟିଏ ନାଆର ଛବି ।)

ଆଶ୍ଚର୍ଯ୍ୟ ! କେମିତି ଏ କାଗଜ ଖଣ୍ଡକ ଆସିଲା ଆମ ଘରକୁ ? ବୋଉ ବାହାହୋଇ ଶ୍ରୀପୁରୁଷୋତ୍ତମପୁରରୁ ଶାଶୁ ଘର ପୁରୀ ପଥୁରିଆ ସାହୀକୁ ଆସିଲା ବେଳେ ତାର ପଢ଼ା ବହି ଓ ଖାତାସବୁ ଆଣିଥିଲା ନିଶ୍ଚୟ । ଖଣ୍ଡେ କାଗଜ କେମିତି ରହି ଯାଇଛି ଓ ସେଇଥିରୁ ମୁଁ ଜାଣୁଛି, ମୋ ବୋଉ ବୋଧହୁଏ ତୃତୀୟ ଶ୍ରେଣୀ ଯାଏଁ ପଢ଼ିଥିଲା ।

ତୃତୀୟ ଶ୍ରେଣୀରେ ପଢ଼ିଲା ବେଳେ ତାକୁ ଯଦି ଆଠ କି ନଅବର୍ଷ ହୋଇଥାଏ, ତେବେ ତାର ଜନ୍ମ ୧୯୨୬ କି ୧୯୨୭ । ଆଉ ଗୋଟିଏ ଚଟି ବହି ବି କେମିତି କେଜାଣି ମୋ ହାତରେ ପଡ଼ିଛି- 'ଓଡ଼ିଶା ନଈବଢ଼ି କାହାଣୀ' । ବହିଟି ଛପା ହୋଇଛି ୧୯୩୭ରେ । ମୋ ବୋଉ ସେ ବହିଟି ପଢ଼ିଥିଲା ନିଶ୍ଚୟ । ତା ନହେଲେ ସେବହିଟିକୁ ଶାଶୁଘରକୁ ଆଣିଥାନ୍ତା କାହିଁକି ?

ଅନ୍ୟମାନଙ୍କଠାରୁ ଶୁଣିଛି- ବୋଉ ମଲାବେଳେ ନନା ଥିଲେ ଦୂରରେ- କୋଉ ଗାଁଆକୁ ଯାଉଥିଲେ ମେଳଣ ଦେଖି । ମୋ ତଳ ଭଉଣୀ ଜନ୍ମ ହେବାର କେତେମାସ ପରେ ବୋଉ ମରିଥିଲା ଅକସ୍ମାତ୍ କଲେରାରେ-ନନା ଖବର ପାଇ ଶ୍ରୀପୁରୁଷୋତ୍ତମପୁରରେ ହୁଏତ ପହଞ୍ଚି ଥିଲେ ଦୁଇ ତିନି ଦିନ ପରେ ଓ ମୋତେ ଓ ମୋ ଭଉଣୀକୁ ନେଇ ଫେରିଥିଲେ ତାଙ୍କ ପୁରୀ ପଥୁରିଆ ସାହୀର ଦୁଇ ବଖୁରିଆ ଚାଳ ଘରକୁ । ନନା ବିଭା ହୋଇଥିଲେ ଯଥେଷ୍ଟ ବିଳମ୍ବରେ-ବିଭା ହେବାର ଛଅ ବର୍ଷ ପରେ ହରାଇଥିଲେ ସ୍ତ୍ରୀକୁ । ବର୍ତ୍ତମାନ ଘରେ ନନା, ନନାଙ୍କ ବୋଉ ଅର୍ଥାତ୍ ମୋ ମାଆ, ମୁଁ ଓ ମୋ ସାନ ଭଉଣୀ । ମୋ ସାନ ଭଉଣୀକୁ ଜେଜେନାନୀ ନେଇଗଲା ପାଳିବାକୁ । ଜେଜେନାନୀ ପାଖରେ ହିଁ ରହିଲା ସେ ତାର ବିଭାଘର ଯାଏଁ । ତେଣୁ ଘରେ ନନା, ମାଆ ଓ ମୁଁ ।

ବତିଶି ବର୍ଷ ବୟସରେ ପ୍ରଥମ ଥର ପାଇଁ ଇଂଲଣ୍ଡ ଯିବା ଯାଏଁ ନନା ପ୍ରାୟ ସବୁବେଳେ ମୋ ପାଖେ ପାଖେ ରହୁଥିଲେ । ମୋର ପାଠପଢ଼ା, ଚାକିରୀ, ବିବାହ, ସନ୍ତାନଲାଭସବୁ ତାଙ୍କରି ଆଗରେ । ଅଥଚ କେଜାଣି କାହିଁକି ବୋଉ କଥା ସେ କହୁ ନଥିଲେ ମୋତେ । ବର୍ତ୍ତମାନ ବୋଉ କଥା ଲେଖୁଛି ଯେତେବେଳେ, ସେ ଥିଲେ ତାଙ୍କୁ କେତୋଟି କଥା ପଚାରିଥାନ୍ତି ହୁଏତ ।

ଶୁଣିଛି- ବୋଉ ମଲାପରେ ନନା ଆମ ପଥର ପିଣ୍ଡା ଉପରେ ବସି କାନ୍ଦି ଥିଲେ । ନନା କାନ୍ଦିବାଟା ମୁଁ କଳ୍ପନା କରି ପାରୁନାହିଁ । କାରଣ ସେ ଥିଲେ ଏମିତି ମଣିଷ ଯେଉଁମାନେ ବଡ଼ ପାଟିରେ ହସିପାରନ୍ତି ସହଜରେ, କିନ୍ତୁ କେବେ କାନ୍ଦିପାରନ୍ତି ନାହିଁ । ବୋଉ ମଲାପରେ ବି ସେ ଆଈ ଘରକୁ ଯାଇଛନ୍ତି ଅନେକଥର । ଗାଁଆର ଜ୍ୱାଇଁ ହୋଇ ଗାଆଁ ଲୋକଙ୍କ ସାଙ୍ଗେ ଥଟ୍ଟା ପରିହାସ କରି ହୋ ହୋ ହସିବା ମୁଁ ଦେଖିଛି । ତାଙ୍କ ମନର ଦୁଃଖ ଓ କାରୁଣ୍ୟକୁ ସେ ବାହାରେ ଦେଖାଉ ନଥିଲେ କେବେ ।

ବୋଉର ଶ୍ରାଦ୍ଧ ପଡ଼େ ଚୈତ୍ର ମାସ କୃଷ୍ଣପକ୍ଷ ଦ୍ୱାଦଶୀ ତିଥିରେ । ଆଗେ ସେ

ଦିନମାନଙ୍କରେ ନନା ମୋତେ ସକାଳେ ଗାଧୋଇବାକୁ କହୁଥିଲେ ଓ ଜଣେ ବ୍ରାହ୍ମଣକୁ ଡାକି ଆମ ଘରେ ଚୁଡ଼ା କଦଳୀ ଇତ୍ୟାଦି ଖାଇବାକୁ ଦିଆ ଯାଉଥିଲା । ଏବେ ସେତକ ମଧ୍ୟ ହେଉ ନାହିଁ ।

ନନା ଯଦିଓ ନିଜେ ବୋଉ ଗାଁଆକୁ ଯାଉଥିଲେ ଅନେକ ଥର- ବୋଉର ମୃତ୍ୟୁ ପରେ- ମୁଁ ଆଇ ସାଙ୍ଗେ ତା ଘରକୁ ଯିବାକୁ ସେ ପସନ୍ଦ କରୁ ନଥିଲେ ମୋଟେ । ଯେଉଁ ଗାଁଆରେ ତାଙ୍କ ସ୍ତ୍ରୀ ମରିଚି, ସେ ଗାଁଆ ପ୍ରତି ତାଙ୍କ ମନରେ ଭୟଥିଲା ନିଶ୍ଚୟ । କାଳେ ମୋତେ ସେ ଗାଁଆରେ କଲେରା ହେବ, ଏହି ପରି ଚିନ୍ତାଟିଏ ସବୁବେଳେ ତାଙ୍କୁ ଡରାଉଥିଲା ହୁଏତ । ମୋର କିନ୍ତୁ ସବୁଠାରୁ ପ୍ରିୟ ଗାଁଆ ଥିଲା ଶ୍ରୀ ପୁରୁଷୋତ୍ତମପୁର । ଆଇ ଘରକୁ ଯିବା ପାଇଁ ମୋର ପ୍ରଚଣ୍ଡ ଝୁଙ୍କ ଛୁଟିଦିନମାନଙ୍କରେ । ଅଗତ୍ୟା ନନାଙ୍କ ନିରୁତ୍ସାହ ଓ ବାରଣ ସତ୍ତ୍ୱେ ସେ ଗାଁଆକୁ ମୁଁ ପିଲାଦିନେ ଯାଇଥିଲି ଅନେକ ଥର ଓ ସେ ଗାଁଆର ସ୍ମୃତି ମୋତେ ଆବୋରି ରଖିଛି ଅହରହ ।

ବୋଉର ମୃତ୍ୟୁ ମୋ ଜୀବନକୁ କିପରି ପ୍ରଭାବିତ ଓ ନିୟନ୍ତ୍ରିତ କରିଛି, କହିବା ସହଜ ନୁହେଁ ।କିପରି କେଜାଣି ଗୋଟାଏ ଶୂନ୍ୟତା, କାରୁଣ୍ୟ ଓ ହାହାକାରଭାବ ଶୈଶବରୁ ସବୁବେଳେ ଗୋଡ଼ାଉଛି ମୋ ପଛେ ପଛେ । ସଂସାରକୁ ସାମ୍ନା କରିବାରେ ଯେଉଁ ନିରାପତ୍ତା ଓ ସାହସ ଶିଶୁ ଓ କିଶୋରମାନଙ୍କୁ ଯୋଗାଇ ଥାନ୍ତି ଜନ୍ମ ଦାୟିନୀମାନେ, ସେଥିରୁ ମୁଁ ପ୍ରାୟ ବଞ୍ଚିତ ହୋଇଛି । ପରିଣାମରେ ମୁଁ ହୁଏତ ହୋଇଛି ଟିକିଏ ଆତ୍ମନିର୍ଭରଶୀଳ, କିନ୍ତୁ ନିସଂଗ । ଶୈଶବରେ ବୋଉକୁ ହରାଇଥିବାରୁ- କାଳେ କୋଉଠି ଆତ୍ମୀୟ ସ୍ୱଜନଙ୍କୁ ହରାଇ ବସିବି- ଏପରି ଗୋଟାଏ ଭୟ ଛାଇ ପରି ପଡ଼ିଛି ମୋ ମନ ଓ ବ୍ୟକ୍ତିତ୍ୱ ଉପରେ ।

ମୁଁ ନୂଆ ବାହା ହୋଇଥାଏ । ଦିନେ ରାତି ଅଧରେ ହଠାତ୍ ମୋ ସ୍ତ୍ରୀ ମୋତେ ନିଦରୁ ଉଠାଇ ପଚାରିଲା, 'କଣ ହୋଇଛି, କାନ୍ଦୁଛ କାହିଁକି ?'

ମୁଁ ସ୍ୱପ୍ନରେ ଦେଖୁଥିଲି- ମୋ ସ୍ତ୍ରୀ ମରିଯାଇଛନ୍ତି । ସ୍ୱପ୍ନରେ ମୁଁ କାନ୍ଦୁ ଥିଲି ।

ସ୍ତ୍ରୀଙ୍କୁ ସ୍ୱପ୍ନ କଥା କହିଲି । ''ମୁଁ ଏତେ ଶ୍ରୀଘ୍ର ମରିବି ନାହିଁ ।'' ସେ ହସି ହସି ମୋତେ ଆଶ୍ୱସନା ଦେଲେ ।

ଅକାଳରେ ବୋଉର ମୃତ୍ୟୁ ଏପରି ଦୁଃସ୍ୱପ୍ନମାନଙ୍କର କାରଣ ହୋଇପାରେ ।



# ବିଦ୍ୟାରେଖା

ବାଇଶି ପାହାଚରେ କୁଜା ହୋଇ ବସି ଲୋକଟି କାହାର ହାତ ଦେଖୁଥିଲା । କ'ଣ ଭାବି ମୋ ମାଆ ସେଇ ଲୋକଟି ପାଖରେ ଠିଆ ହେଲା । ମୁଁ ଜୋର୍‌ରେ ଜାବୁଡ଼ି ଧରିଥାଏ ମାଆର ହାତଟା ।

ପ୍ରାୟ ସବୁଦିନ ମୋ ମାଆ ଯାଉଥିଲା ଜଗନ୍ନାଥ ଦର୍ଶନ କରିବାକୁ । ସେ ଯୁଆଡ଼େ ଯାଏ, ଛାଇପରି ଟାଣି ନେଇଯାଏ ମୋତେ । ସେତେବେଳେ ମୋତେ ଛଅ କି ସାତ ବର୍ଷ । ମାଆକୁ ସତୁରି ପାଖାପାଖି । ମୋ ବୋଉ ମରିବାର ଦୁଇବର୍ଷ ହୋଇଯାଇଥାଏ । ମୋର ସବୁ ଦାୟିତ୍ୱ ପଡ଼ିଥାଏ ମାଆ (ପିତାମହୀ) ଉପରେ ।

''ଆରେ ହାତ ଦେଖୁଛୁ ପରା, ମୋ ନାତି ହାତଟା ଦେଖିଲୁ ।'' ଆଦେଶ ଦେଲା ମୋ ମାଆ । କୁଜା ଲୋକଟି ଟିକିଏ ସଙ୍କୁଚିତ ହୋଇପଡ଼ିଲା । ମୋ ମାଆ ବିଧବା ବ୍ରାହ୍ମଣୀ ତାର ସବୁ କଥା ତ ସମସ୍ତଙ୍କ ପାଇଁ ଆଦେଶ !

ଲୋକଟା ହାତ ଦେଖାଇବାକୁ ଅପେକ୍ଷା କରିଥିବା ଜଣେ ଦି'ଜଣଙ୍କୁ ପଛକୁ ରଖି ପ୍ରଥମେ ମୋ ହାତଟା ପରୀକ୍ଷା କରିବାରେ ଲାଗିଲା । ଖୁବ୍ ସତର୍କ, ଖୁବ୍ ଚିନ୍ତିତ ଦେଖାଗଲା ସେ । ଶେଷରେ ତାର ଘୋଷଣା, ''ମାଉସୀ, ବିସୁଖ ପାଇବ ନାହିଁ ବୋଇଲେ କହିବି । ତୁମ ନାତି ହାତରେ ବିଦ୍ୟାରେଖା ନାହିଁ ।''

''ଆରେ ଆୟୁଷ ରେଖାଟା ଟିକିଏ ଦେଖି ।'' ବିରକ୍ତ ସ୍ୱରରେ କହିଲା ମୋ ମାଆ ।

କୁଜା ଲୋକଟି ପୁଣି ଦେଖାଗଲା ସତର୍କ ଓ ଚିନ୍ତିତ । ତା ପରେ ପୁଣି ଦ୍ୱିତୀୟ ଘୋଷଣା, ''ଆୟୁଷ ରେଖାଟା ଖୁଉବ୍ ଟାଣ, ମାଉସୀ । ପଞ୍ଚାଅଶୀ ବର୍ଷ.... ।''

''ବିଦ୍ୟାରେଖା ନଥିଲେ ନଥାଉ, ଆୟୁଷ ଥିଲେ ହେଲା । ବାହ୍ମଣ ପିଲା,

ଭିକମାଗି ଖାଇବ..... ।''

ପ୍ରାୟ ପଚାଶ ବର୍ଷ ତଳର ଘଟଣା । ଭୁଲି ହୋଇନାହିଁ । ମାଆ ମଲାଣି କେବେଠୁ । ବିଦ୍ୟା ନଥିଲେ ନଥାଉ, ଖାଲି ଆୟୁଷ ଥାଉ - ଏଇୟା ଥିଲା ମୋ ମାଆର ମୋ ପାଇଁ କାମନା । କାରଣଟା ବୁଝିବା ହୁଏତ କଠିନ ନୁହେଁ । ମୋ ବାପା (ପିତାମହ) ମାଗୁଣି ମିଶ୍ରେ ମରିଥିଲେ ମାତ୍ର ବୟାଳିଶି ବର୍ଷରେ । ସେ ଥିଲେ ଜଣେ ସଂସ୍କୃତ ପଣ୍ଡିତ । ନିଜ ଗ୍ରାମ ବିଶ୍ୱନାଥପୁର ଛଡ଼ା ପୁରୀ ପଥୁରିଆ ସାହୀରେ ମଧ ତାଙ୍କର ଘର ଥିଲା । ଏମିତି କି ପଥୁରିଆ ସାହୀ ଚାଳଘରକୁ କୋଠାରେ ପରିଣତ କରିବାର ଯୋଜନା ମଧ ସେ କରୁଥିଲେ । ଏତେ ସ୍ୱଚ୍ଛଳ ଥିଲା ତାଙ୍କର ଅବସ୍ଥା । ସନ୍ଧ୍ୟା ଦର୍ଶନ ଦିନ ହଠାତ୍ ଅକାଳରେ ତାଙ୍କର ପରଲୋକ ହୋଇଗଲା । ଖାଲି ସେତିକି ନୁହେଁ, ମୋତେ ଚାରି ବର୍ଷ ବେଳେ ମୋ ବୋଉ ବି ଆଖି ବୁଜିଲା । ସେତେବେଳେ ତାକୁ ସତର କି ଅଠର ବର୍ଷ ।

ମୋର ଆୟୁଷ ବିଷୟରେ ମୋର ମାଆ ଖୁବ୍ ଚିନ୍ତିତ ରହୁଥିଲା । ମୋ ହାତରେ ବିଦ୍ୟାରେଖା ନଥିଲେ ବି ମୋ ବାପାଙ୍କ ପରି ମୁଁ ଜଣେ ପଣ୍ଡିତ ହୁଏ, ଏହା ମଧ ଥିଲା ମୋ ମାଆର ଇଚ୍ଛା । ବେଳେ ବେଳେ ସେ ବୋଲୁଥିବା ଗୋଟିଏ ଗୀତରୁ ଏହା ବୁଝି ହେଉଥିଲା । ଗୀତଟି ମୁଁ ଭୁଲି ଯାଇଛି । ତେବେ ତାହାର ଅର୍ଥ ମୋଟା ମୋଟି ଏହିପରି-

କାନ୍ଧରେ ସୁବର୍ଣ୍ଣ ପଇତା ପକାଇ ମୁଣ୍ଡରେ ଚନ୍ଦନଟୋପା ପିନ୍ଧି ମୁଁ ଅନ୍ୟ ପାଞ୍ଚଜଣଙ୍କ ସହିତ ସଭାରେ ସଂସ୍କୃତ ଶ୍ଳୋକ ଆବୃତ୍ତି କରୁଥିବି । (ଗୀତଟିଏ ସେ ନିଜେ ଫାନ୍ଦି ନଥିଲା ତ ?) ହାତରେ ବିଦ୍ୟାରେଖା ନଥିଲେ ବି ମୋ ମାଆର ଦ୍ୱିତୀୟ ଇଚ୍ଛାଟି ମୋ ଜୀବନରେ କେତେକାଂଶରେ ସଫଳ ହୋଇଛି ।

ମୋ କାନ୍ଧରେ ଅବଶ୍ୟ ପଇତା ନାହିଁ କି ମୁଣ୍ଡରେ ଚନ୍ଦନଟୋପା ନାହିଁ । କିନ୍ତୁ ସଭାରେ ବସି କେବେ କେବେ ମୁଁ ଶ୍ଳୋକ ଆବୃତ୍ତି କରୁଛି । ସଂସ୍କୃତରେ ନହେଲେ ବି ଇଂରାଜୀରେ ।

ମୋ ମାଆ ମୋତେ ଯଦି ଆଜି ଦେଖିପାରୁଥାଏ, ଖୁବ୍ ଆମୋଦିତ ହେଉଥିବ ନିଶ୍ଚୟ !



# ସ୍କୁଲ୍‌ଦିନ

ପୁରୀ ପଥୁରିଆ ସାହୀରେ ଆମ ଘର । ଆମଘରଠାରୁ ଚାରି ପାଞ୍ଚଟି ଘର ଛାଡ଼ି ଦୟିତାପଡ଼ା ସାହୀ ଉଚ୍ଚପ୍ରାଥମିକ ବିଦ୍ୟାଳୟ । ସେଇ ବିଦ୍ୟାଳୟରେ ଶିଶୁ ଶ୍ରେଣୀରେ ନନା ମୋ ନାଁ ଲେଖାଇ ଦେଇଥିଲେ- ବୋଧହୁଏ ୧୯୪୯ ମସିହାରେ ।

ପ୍ରଥମେ ପ୍ରଥମେ କେତେଦିନ ସ୍କୁଲ ଯିବାପରେ ମୁଁ ସ୍ଥିର କଲି- ଆଉ ଯିବି ନାହିଁ । ଦିନେ ପ୍ରାୟ ଦଶଟା ବେଳେ ସାହୀ ଦାଣ୍ଡରେ ଏକା ଏକା ଗୁଲିଖେଳୁଛି, ସ୍କୁଲ ବାହାରି ଥିବା ମୀନ ମୋତେ ପଚାରିଲା, ''ତୁ ଆଉ ସ୍କୁଲ୍ ଯାଉନୁ କି ?''

''ନାଁ'', ମୁଁ କହିଲି ।

ସେ ବାଟରେ ଯାଉ ଯାଉ କହିଲା, ''ଗୁରୁମା ଭଲ ଭଲ ଗପ କହୁଛନ୍ତି ।'' ତା'ପରଦିନ ମୋ ସିଦ୍ଧାନ୍ତ ବଦଳାଇ ସ୍କୁଲ ବାହାରିଲି- ଗୁରୁମା'ଙ୍କ ଗପ ଶୁଣିବା ପାଇଁ । ସେଦିନ ମୀନ ସାଙ୍ଗେ ଦେଖା ହୋଇ ନଥିଲେ ମୁଁ କ'ଣ ଆଉ ସ୍କୁଲ୍ ଯାଇନଥାନ୍ତି ? ହୁଏତ ନୁହେଁ ।

ମୋର ସ୍କୁଲ ଯିବାଟା ଏକ ଆକସ୍ମିକତା । ପାଠପଢ଼ି ମୁଁ ଚାକିରୀ କରିବି- ଏପରି ଧାରଣାଟିଏ ନନାଙ୍କ ମନରେ ସେତେବେଳେ ନଥିଲା । ହୁଏତ ମୋ ପରି ଯେଉଁ ପିଲାମାନେ ସ୍କୁଲ ଯାଇ ନାହାନ୍ତି ବା ସ୍କୁଲ୍ ଛାଡ଼ିଛନ୍ତି ଅଧାରୁ, ସେମାନେ ଯାହା କରୁଛନ୍ତି, ମୁଁ ସେଇଆ କରିଥାନ୍ତି ।

ଦୟିତାପଡ଼ା ସାହୀ ଉଚ୍ଚପ୍ରାଥମିକ ବିଦ୍ୟାଳୟ କହିଲେ, ଚାରୋଟି ବଖରା ଟିଣଛାତ । ଛୋଟ ଖେଳ ପଡ଼ିଆ । ସ୍କୁଲ ଫାଟକ ନିକଟରେ ଗୋଟିଏ ପୁରୁଣା କୂଅ । କୂଅ ସାମନାରେ ଅର୍ଦ୍ଧପଦ୍ମା ଠାକୁରାଣୀଙ୍କ ମନ୍ଦିର । ଦୀର୍ଘ ଛଅ ବର୍ଷ ଏମାନଙ୍କ ସହିତ ମୋର ରକ୍ତ ମାଂସର ସମ୍ପର୍କ- ଏମିତି ଯେ ମୁଁ ହସିଲେ ଏମାନେ ହସନ୍ତି; ମୁଁ କାନ୍ଦିଲେ

ଏମାନେ କାନ୍ଦନ୍ତି; ଉଭୟ ସ୍ୱପ୍ନ ଓ ଜାଗରଣରେ ଏମାନଙ୍କ ସହିତ ମୁଁ କଥାବାର୍ତ୍ତା କରୁଥାଏ ।

ମୋର ସାଙ୍ଗ ସାଥୀ, ସାର୍‌, ଗୁରୁମା- କାହାକଥା କହିବି ? ଗୋଟିଏ ଦିନର ଘଟଣା ଶୁଣନ୍ତୁ ।

ସେଦିନ ଗଣେଶ ଚତୁର୍ଥୀ । ସକାଳୁ ସ୍କୁଲରେ ଫୁଲ- ଭୋଗ ଇତ୍ୟାଦି ଦେଇ ସାରିବା ପରେ ଦେଖାହେଲା ରାମ ଓ ପ୍ରଫୁଲ୍ଲ ସହିତ । ଉଭୟେ ପାନଖିଲି ଖାଇ ନାଲି ଓ ହସ ହସ ଦିଶୁଥାନ୍ତି ।

କହିଲା ରାମ, ''ପୂଜାସରି ପଙ୍ଗତ ହେଲା ବେଳକୁ ସଞ୍ଜ ହେବ । ଚାଲ୍‌, ରେଲ୍‌ରେ ସାକ୍ଷୀଗୋପାଳ ଯିବା ।''

ରାମ ଚତୁର୍ଥ ଶ୍ରେଣୀରେ ପଢୁଥାଏ - ତା କଥା ବାର୍ତ୍ତା ଚାଲି ଚଳନରେ ଥାଏ ଗୋଟାଏ ମୂରବୀୟାନି । ପ୍ରଫୁଲ୍ଲ ଓ ମୁଁ ତୃତୀୟ ଶ୍ରେଣୀରେ ।

''ଟିକେଟ ପାଇଁ ପଇସା କାହିଁ ?'' ପଚାରିଲି ।

ପ୍ରଫୁଲ୍ଲ ହସିଲା । ପାନବୋଳରେ ନାଲିହସ । ପକେଟ୍‌ରୁ ବାହାର କରି ଦେଖାଇଲା କେତୋଟି ଚାରଣି ଓ ଆଠଣି । ଧଳା ଓ ଚିକ୍ ଚିକ୍ ।

'ଏତେ ପଇସା ଆଣିଲୁ କେଉଁଠୁ ?'

''ବାପାଙ୍କ ପକେଟରୁ,'' କହିଲା ପ୍ରଫୁଲ୍ଲ । ଶ୍ୟାମକୁଞ୍ଜ ଗଳିରେ ତାଙ୍କର ଘର । ''ବାପା ଜାଣିଲେ କ'ଣ ହେବ ?''

ପୁଣି ହସିଲା ସେ । ''ବାପା ଜାଣିବେ କେମିତି ? ତାଙ୍କ ପକେଟ୍‌ରେ ସବୁବେଳେ ଶହ ଶହ ଟଙ୍କା । ଟଙ୍କା ସେ ଗଣନ୍ତି ନାହିଁ ।''

ରାମ ବୁଝାଇ ଦେଲା ''ଆଜି ଗଣେଶ ଚତୁର୍ଥୀ । ତେଣୁ ରେଲ୍‌ରେ ଟିକେଟ ଦରକାର ନାହିଁ । କାରଣ ଆମେ ''ଷ୍ଟୁଡେଣ୍ଟସ୍‌'' ।''

ସେ ଦିନ ପ୍ରଥମେ ଜାଣିଲି ''ଷ୍ଟୁଡେଣ୍ଟସ୍‌'' ହେବାର ମଜା । ଯଥାଶୀଘ୍ର ଆମେ ଷ୍ଟେସନ୍‌-ଯାଇ ରେଲ୍‌ରେ ଚଢ଼ିଲୁ । ସକାଳେ ଯାଇ ଉପରଓଳି ଫେରି ଆସି ପଙ୍ଗତ ବେଳକୁ ସ୍କୁଲରେ ପହଞ୍ଚି ଯିବୁ । ଆମେ ସାକ୍ଷୀ ଗୋପାଳ ଯାଇଛୁ ବୋଲି କେହି ଜାଣିବାର ଉପାୟ ନାହିଁ ।

ରେଲ୍ ଚାଲିଲା । କୁଆଡୁ ଆସି ପହଞ୍ଚିଗଲେ ଜଣେ ଟି.ଟି.ଆଇ । ''ଟିକେଟ୍ ?'' ରେଲ୍‌ଇଞ୍ଜିନ୍‌ର ଶବ୍ଦପରି ପଚାରିଲେ ଆମକୁ । ''ଷ୍ଟୁଡେଣ୍ଟସ୍‌'', କହିଲା

ରାମ । ଟି.ଟି.ଆଇ ଆମକୁ କିଛି କ୍ଷଣ ନିରିକ୍ଷଣ କରି ସତକୁ ସତ କିଛି କହିଲେ ନାହିଁ । ମ୍ୟାଜିକ୍ ଦେଖାଇଲା ଭଳି ରାମ ନିଜ ପକେଟ୍ରୁ ସିଗାରେଟ୍ ଟିଏ ବାହାର କରି ଟି.ଟି.ଆଇଙ୍କ ଆଡ଼େ ବଢ଼ାଇଦେଲା । ଟି.ଟି.ଆଇ ବିନା ବାକ୍ୟବ୍ୟୟରେ ତାହାଗ୍ରହଣ କରି ନିଜକର୍ତ୍ତବ୍ୟରେ ଅନ୍ୟ ଯାତ୍ରୀମାନଙ୍କ ନିକଟକୁ ଚାଲିଗଲେ ।

ରାମର ବୁଦ୍ଧି ଓ ସାହସର ପ୍ରଶଂସା କରିବା ପାଇଁ ମୋର ଭାଷା ନଥିଲା । ମୁଁ ବି ସେତେବେଳକୁ ମିଠା ପାନଖଣ୍ଡେ ଚୋବାଇବା ଆରମ୍ଭ କରିଦେଇଥାଏ ।

ସାକ୍ଷୀ ଗୋପାଳ ମନ୍ଦିରକୁ ଯାଇ ଆମେ ଚୁଡ଼ାପଖାଳ ଖାଇଲୁ–ତାପରେ କୌଣସି ଦୋକାନରୁ ବଡ଼ ବଡ଼ ମିଠେଇ ଓ ରସଗୋଲା । ବୁଲା ବିକାଳୀଠାରୁ କିଣିଲୁ ପାଚିଲା ଚାଉଳିଆ । ରାମ ଖଣ୍ଡିଏ କ୍ୟାପ୍ଷ୍ଟେନ ସିଗାରେଟରେ ନିଆଁ ଧରାଇଥାଏ । ସେ ଆମର ନେତା । ସେ ଯାହା କହୁଥାଏ ବା କରୁଥାଏ, ପ୍ରଫୁଲ୍ଲ ଓ ମୁଁ ତାହା ଖୁବ୍ ପସନ୍ଦ କରୁଥାଉ ।

ପୁରୀ ଫେରିବା ପାଇଁ ଷ୍ଟେସନ୍‌ରେ ପହଞ୍ଚି ଶୁଣିଲୁ- ଆମର ଡେରିହୋଇ ଯାଇଛି । ରେଲ୍ ଏଇ ଟିକକ ଆଗରୁ ପୁରୀ ଚାଲି ଯାଇଛି । ଯା ପରଗାଡ଼ି ଆସିବ ରାତି ଆଠଟାରେ ।

ଘୋର ଦୁଃଖରେ ଅପେକ୍ଷା କଲୁ ପ୍ଲାଟଫର୍ମରେ । ସାକ୍ଷୀଗୋପାଳ ଆସିବା, ପାନ, ସିଗାରେଟ, ଚୁଡ଼ା ପ୍ଖାଳ, ରସଗୋଲାର ମଜା ପାଣି ଫଟିଗଲା । ଆଉ କିଛୁ ଉପାୟ ନଥିଲା ।

ଶେଷରେ ଅବଶ୍ୟ ରେଲ୍ ଆସିଲା । ପୁରୀରେ ପହଞ୍ଚିଲା ବେଳକୁ ରାତି ନଅଟା । ମୁଁ ଆସି ସାହୀ ମୁଣ୍ଡେ ପହଞ୍ଚିଲା ବେଳକୁ ମୋତେ ଘେରିଗଲେ ଅନେକ ଲୋକ- ''କିରେ କୁଆଡ଼େ ଯାଇଥିଲୁ ତୁ ? ତୋ ନନା ତୋତେ ଟାଉନ୍ ସାରା ଖୋଜୁଛନ୍ତି ।''

ନନା ଆସି ପହଞ୍ଚିଗଲେ । ପ୍ରଫୁଲ୍ଲ ଓ ରାମ ସେତେବେଳକୁ ମୋତେ ଛାଡ଼ି କୁଆଡ଼େ ଚାଲିଗଲେଣି । ନନାଙ୍କ ଆଦେଶ ହେଲା, ''ଯାହାତ ହେବାର କଥା ହେଲାଣି । ସ୍କୁଲରେ ପଙ୍ଗତ ଆରମ୍ଭ ହେଇଛି । ସାଙ୍ଗେ ସାଙ୍ଗେ ଯା ।''

ମୁଁ ତୁରନ୍ତ ନନାଙ୍କ ଆଦେଶ ପାଳନ କରି ସ୍କୁଲ ଆଡ଼େଗଲି । କିନ୍ତୁ ସ୍କୁଲରେ ସାର୍ ମାନେ ନିଶ୍ଚୟ ଶୁଣିଥିବେ ମୁଁ କୁଆଡ଼େ ଯାଇଥିବା କଥା । ତେଣୁ ସ୍କୁଲ ନଯାଇ ଗୋଟିଏ ଗୋଟିଏ ଚାଲିଲି ଲବଣୀଖିଆଛକକୁ । ସେଠାରେ ଗଣେଶ ମୂର୍ତ୍ତିଟିଏ ହୋଇଥିଲା । ସେଇ ମୂର୍ତ୍ତି ଆଗରେ କିଛି ସମୟ ଠିଆ ହୋଇ ଘରକୁ ଫେରିଲି ।

ନନା ପଚାରିଲେ, ''ସ୍କୁଲରେ ଖାଇ ଫେରିଲୁ ?''

''ହଁ ।''

''କଣ ସବୁ ହୋଇଥିଲା ?''

''ଅଭଡ଼ା, ଡାଲି, ମହୁର,..... ।''

ନନା ଓ ମୁଁ ଶୋଇବାକୁ ଗଲୁ । ସାକ୍ଷୀଗୋପାଳର ଚୁଡ଼ା ପଖାଳ ଇତ୍ୟାଦି କେତେବେଳୁ ହଜମ ହୋଇ ସାରିଥାଏ । ଭୋକରେ ପେଟଜଳୁ ଥାଏ । ଟିକକ ପରେ କେହି ଜଣେ ଦାଣ୍ଡ ଦୁଆରେ ଡାକିଲେ-''ମିଶ୍ରେ ।''

ନନା ଦୁଆର ଫିଟାଇଲେ । ବାସୁ ସାରଙ୍କ ପାଟି-''ଆଏ, ସବୁପିଲାତ ଆସିଲେ । ତମ ପୁଅତ କାଇଁ ଖାଇବାକୁ ଆସିଲାନାହିଁ ?''

ପ୍ରକୃତ ବିପଦଟା ଏତେ ବେଳକୁ ଛିଣ୍ଡି ପଡ଼ିଲା । ନନା ମୋ ଉପରେ କସି ଦେଲେ କେତେଟା ବିଧା ଚାପୁଡ଼ା ।

କାନ୍ଦି କାନ୍ଦି ବାସୁ ସାର୍‌ଙ୍କ ସାଙ୍ଗେ ଗଲି ସ୍କୁଲ୍ । ସେ ମୋ ହାତଟା ଧରି ଟାଣି ଟାଣି ନେଉଥାନ୍ତି । ପୁଣି କାଳେ ଖସି ସାକ୍ଷୀଗୋପାଳ ଚାଲିଯିବି-ହୁଏତ ଏଇଥି ପାଇଁ ଜୋରରେ ମୋ ହାତଟା ଧରିଥାନ୍ତି ।

ସେତେବେଳକୁ ସବୁପିଲା ପଙ୍ଗତ ଖାଇ ସାରି ଘରକୁ ଫେରି ଯାଇଥାନ୍ତି । ସ୍କୁଲଟା ଶୂନ୍‌ସାନ୍ ଦିଶୁଥାଏ । ମୁଁ ମୋର ପ୍ରବଳ ପ୍ରତାପୀ ସାର୍‌ମାନଙ୍କ ସାଙ୍ଗେ ଡ଼ରି ଡ଼ରି ବସି ଅଭଡ଼ା ଖାଇଲି । ସେମାନେ ମୋତେ ଖୁବ୍ ଗାଳି ଦେବେ ବୋଲି ଭାବୁଥିଲି । ସେମାନେ କିନ୍ତୁ ସେପରି କିଛି କଲେ ନାହିଁ । ମୋତେ ଯେମିତି ସେମାନେ ଧରି ନେଇଥିଲେ ସେମାନଙ୍କ ଭିତରୁ ଜଣେ ବୋଲି !

ଆଜି ନନା ନାହାନ୍ତି; ବାସୁ ସାର୍ ବି ନାହାନ୍ତି । ସେମାନଙ୍କ କଥା ଲେଖିଲା ବେଳେ ସେମାନଙ୍କ ସ୍ମୃତି ଆଜି ମୋ ନିକଟକୁ ଫେରି ଆସୁଛି- ଆଖିର ଲୁହ ହୋଇ ।

ଦୟିତାପଡ଼ା ସାହୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରୁ ପଞ୍ଚମ ଶ୍ରେଣୀ ପାଶ୍ କରି ଷଷ୍ଠଶ୍ରେଣୀରେ ମୁଁ ନାଁ ଲେଖାଇଲି ପୁରୀଜିଲ୍ଲାସ୍କୁଲରେ- ୧୯୫୪ରେ । ଜିଲ୍ଲାସ୍କୁଲ ଆମ ଘର ଠାରୁ ବେଶ୍ ଦୂର । ସବୁ ଶିକ୍ଷକ ନୂଆ, ସବୁ ସାଙ୍ଗସାଥୀ ବି ନୂଆ । ପୁରୁଣା ସ୍କୁଲଟିକୁ ଯେମିତି କେଉଁଠି ପଛରେ ଛାଡ଼ି ଆସିଲି ।

ଜିଲ୍ଲା ସ୍କୁଲରେ ପଢ଼ିଲି ଛଅ ବର୍ଷ । ଅନେକ ଅନୁଭୂତି ସେ ସ୍କୁଲରେ । ଗୋଟିଏ ଅନୁଭୂତି ବର୍ଣ୍ଣନା କରୁଛି ଏଠାରେ ।

ସପ୍ତମ ଅଷ୍ଟମ ଶ୍ରେଣୀରେ ଜଣେ ସାଙ୍ଗ ଯୁଟିଲା ପ୍ରଫୁଲ୍ଲ । ସାକ୍ଷୀଗୋପାଳ ଯାତ୍ରାର, ଶ୍ୟାମକୁଞ୍ଜଗଳିର, ପ୍ରଫୁଲ୍ଲ ପଟ୍ଟନାୟକ ନୁହେଁ, ନୂଆ ସାହୀର ପ୍ରଫୁଲ୍ଲ ମହାନ୍ତି । ସୁନ୍ଦର ଚେହେରା, ହସ ହସ ମୁହଁ । ମୋ ସହିତ ସାଙ୍ଗ ହେବା ପାଇଁ ପ୍ରଫୁଲ୍ଲର ଆଗ୍ରହ ଥିଲା ଖୁବ୍ । ତାର କାରଣ ହୁଏତ ମୋର ଇଂରାଜୀ ଜ୍ଞାନ । ଇଂରାଜୀଟା ମୋର ଭଲ ହେଉଥାଏ । ଭଲପିଲାମାନଙ୍କ ସହିତ ମିଳାମିଶା କରିବା ଉଚିତ୍- ଏହିପରି ନୀତିରେ ବିଶ୍ୱାସକରି ପ୍ରଫୁଲ୍ଲ ବେଳେବେଳେ ମୋ ସହିତ ଆସି କଥାବାର୍ତ୍ତା ହେଉଥିଲା ।

ପ୍ରଫୁଲ୍ଲ ମୋ ସହିତ ଇଂରାଜୀରେ ହିଁ କଥା ହେବାକୁ ଚାହୁଁ ଥିଲା । ଆମେ ଦୁହେଁ ତେଣୁ ଖଣ୍ଡି ଇଂରାଜୀରେ କଥାଭାଷା ହେଉଥିଲୁ ।

ଏମିତିକି ଥରେ ସେ ଓ ମୁଁ ସଞ୍ଜବେଳେ ଚାଲି ଚାଲି ଗଲୁ ତିଆଡ଼ି ସାହୀ । ସେହି ସାହୀରେ ମୋ ମାଉସୀ ଘର । ମାଉସୀ ଘରକୁ ଯାଇ ମାଉସୀ ନାନୀକୁ ଭେଟିଲି- ଆମର କଥାବାର୍ତ୍ତା ଚାଲିଥାଏ ଇଂରାଜୀରେ । ଗୋଟିଏ ଇଂରାଜୀ ଶବ୍ଦ ଜାଣିନଥିଲେ ବି ମାଉସୀନାନୀ ଆମର ଅସାଧାରଣ ପାଣ୍ଡିତ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇଗଲା ।

ପ୍ରଫୁଲ୍ଲ ଏଇ ମାତ୍ର ଟାଇଫଏଡ୍‌ରୁ ଉଠିଥାଏ । ମୋତେ ଖଣ୍ଡି ଇଂରାଜୀରେ କହୁଥାଏ, ''ଦେହ ଭଲ ହୋଇ ଗଲାଣି । ହେଲେ ଦୁର୍ବଳ ଲାଗୁଛି । ପାଣିପିଇଲେ କାହିଁକି ପିତା ପିତା ଲାଗୁଛି ।''

ଏହାର ଅଳ୍ପ କେତେ ଦିନ ପରେ ଖବର ପାଇଲି । ମୁଁ ଓ ମୋର କେତେଜଣ ସାଙ୍ଗ ଦୌଡ଼ିଲୁ ଡାକ୍ତରଖାନା । ଖରାବେଳ । ସହରଟା ଖାଁ ଖାଁ ଖିଙ୍କାରୁଥାଏ ।

କେତେଜଣ ଲୋକ ପ୍ରଫୁଲ୍ଲର ବାପାଙ୍କୁ ଗୋଟିଏ ରିକ୍ସାରେ ବସାଇ ଡାକ୍ତର ଖାନା ଭିତରୁ ଆଣୁଥାନ୍ତି । ସେ ମୋତେ ଚିହ୍ନନ୍ତି- ମୋତେ ଦେଖିଲେ ଚଉଡ଼ାଏ ହସଟିଏ ହସନ୍ତି । ଆଜି କିନ୍ତୁ ସେ ସେପରି କଲେନାହିଁ । ମୋତେ ଆଦୌ ଚିହ୍ନି ନଥିବା ପରି ବଲ ବଲ ଅନାଇଲେ ।

ଡାକ୍ତରଖାନା ଖଟିଆଟି ଉପରେ ପ୍ରଫୁଲ୍ଲର ଦେହ ଧଳା ଓ ଶେତା ଦିଶୁଥିଲା । ମୁଁ ତା ପାଖେ ବେଶୀ ସମୟ ରହି ନଥିଲି ।

ଜଣେ ପ୍ରିୟ ସାଙ୍ଗକୁ ହରାଇବାର ଦାରୁଣ ଦୁଃଖ- ପ୍ରଫୁଲ୍ଲ ହିଁ ମୋତେ ପ୍ରଥମେ ଶିଖାଇଥିଲା ।



# ଆଈ

ଖରା ଛୁଟିମାନଙ୍କରେ ମୁଁ ଯାଉଥିଲି ଆଈ ଘରକୁ । ବର୍ଷକରେ ଥରେ ତେଣୁ ସେ ସୁଯୋଗ ଆସୁଥିଲା । ଆଈ ଘରକୁ ଯିବାରେ ଯେଉଁ ଉଲ୍ଲାସ, ଉତ୍ତେଜନା ଓ ପ୍ରତୀକ୍ଷା, ଜୀବନରେ ଅନ୍ୟ ଘଟଣାମାନଙ୍କରେ ଖୁବ୍ କମ୍ ଘଟିଛି ସେପରି ।

ଜୁନ୍ ମାସରେ ସାତ ଆଠଦିନ ପାଇଁ ଆଈ ଘରକୁ ଯିବାକୁ ଖୁବ୍ କଷ୍ଟରେ ନନା ରାଜି ହେଉଥିଲେ । ଆଈ ମୋତେ ନେବାକୁ ଆସିଲେ ନନାଙ୍କ ମୁହଁ ଶୁଖିଯାଏ । ଆଈ ଘରକୁ ଯିବା ପାଇଁ ମୋର ବ୍ୟାକୁଳତା ଯେତିକି, ମୋତେ ଆଈ ସାଙ୍ଗରେ ନ ଛାଡ଼ିବା ପାଇଁ ନନାଙ୍କ ଇଚ୍ଛା ସେତିକି । ଶେଷରେ କିନ୍ତୁ ନନାଙ୍କ କଥା ରହେ ନାହିଁ । ବ୍ୟାଗ୍‌ରେ ଜାମାପ୍ୟାଣ୍ଟ ବହିଖାତା ଗୁଡ଼ାଏ ଭର୍ତ୍ତିକରି ମୁଁ ବାହାରି ପଡ଼େ ।

ମୋତେ ଆଈଘର ଅର୍ଥାତ୍ ଶ୍ରୀପୁରୁଷୋତ୍ତମପୁରକୁ ଛାଡ଼ିବା ପାଇଁ ନନା ରାଜି ନ ହେବାର କାରଣ ଥିଲା । ସେଇ ଗାଁଆରେ ମୋ ବୋଉ ହଠାତ୍ ମରିଯାଇଥିବାରୁ ଶ୍ୱଶୁର ଗାଁଆ ପ୍ରତି ନନାଙ୍କ ମନରେ ଭୟ ଥିଲା ଯଥେଷ୍ଟ । ବୋଉ ମରିବାର ସଠିକ୍ କାରଣ ମୋତେ ଜଣାନାହିଁ । ତେବେ କାହା କାହାଠାରୁ ଶୁଣିଥିବା କଥାବାର୍ତ୍ତାରୁ ମୋର ଅନୁମାନ । ହଠାତ୍ କଲେରାରେ ବୋଉ ମରିଥିଲା । କହିବା ଅନାବଶ୍ୟକ-ପଇଁଚାଳିଶି ବର୍ଷତଳେ ଶ୍ରୀପୁରୁଷୋତ୍ତମ ପରି ନିଭୃତ ଅବହେଳିତ ଗାଁଆରେ କଲେରାର ଚିକିତ୍ସା ପାଇଁ କୌଣସି ସୁବିଧା ନଥିଲା । ଗାଁଆର ସମସ୍ତେ ଗୋଟିଏ ପୋଖରୀର ପାଣି ପିଉଥିଲେ । ସେଇଥିରେ ଗାଧୁଆପାଧୁଆ, ଶୌଚକ୍ରିୟା ମଧ୍ୟ କରୁଥିଲେ । ସବୁ ଶ୍ରେଣୀର ରୋଗୀ-ଏପରିକି କୁଷ୍ଠରୋଗୀ ମଧ୍ୟ ସେଇ ପୋଖରୀ ବ୍ୟବହାର କରୁଥିଲେ ।

ମୋତେ ଶ୍ରୀପୁରୁଷୋତ୍ତମପୁର ଛାଡ଼ିବାରେ ଆପତ୍ତି କରୁଥିଲେ ମଧ୍ୟ ନନା ନିଜେ କେବେ କିପରି ସେ ଗାଁଆକୁ ଯାଉଥିଲେ । ବୋଉ ମରିଗଲା ପରେ ମଧ୍ୟ ସେ ଗାଁଆର ସମସ୍ତେ ତାଙ୍କୁ ଜୋଇଁପରି ବ୍ୟବହାର କରୁଥିଲେ; ତାଙ୍କ ସହିତ ଥଟ୍ଟା ପରିହାସ

ହେଉଥିଲେ । ନନା ସେ ଥଟ୍ଟା ପରିହାସରେ ପୂର୍ଣ୍ଣପ୍ରାଣରେ ଯୋଗଦେଇ ଯେପରି ହୋ ହୋ ହସୁଥିଲେ, ତାହା ଭାବି ଆଜି ମୁଁ ଆଶ୍ଚର୍ଯ୍ୟ ହୋଇଯାଏ । ସତର ଅଠର ବର୍ଷର ଯୁବତୀ ସ୍ତ୍ରୀକୁ ହରାଇବାର ଦୁଃଖକୁ ସାରାଜୀବନ ସେ ଯେ ଘାଙ୍କି ଚାଲିଥିଲେ, ସେପରି କରିପାରିବାର ସାମର୍ଥ୍ୟ ଖୁବ୍ କମ୍ ଲୋକଙ୍କଠାରେ ଥାଇପାରେ ।

ଆଈ ଘରକୁ ଯିବାର ଦିନକ ଆଗରୁ ମୁଁ ତା' ସାଙ୍ଗେ ଯାଏ ମାଉସୀନାନୀ ଘରକୁ ପୁରୀ ତିଆଡ଼ିସାହୀକୁ । ଦିନଟି ଥାଏ ଦିଅଁ ବିଭାହ । ଶୀତଳଷଷ୍ଠୀର ପୂର୍ବଦିନ ।

ରାତିରେ ଯମେଶ୍ୱରେ ଚଉଦୋଳରେ ଘର ଘର ବୁଲି ପଙ୍କ୍ତି ଖାଆନ୍ତି । ମାଉସୀନାନୀ ଘରେ ପଂକ୍ତି ପାଇଁ ଚୁଡ଼ାଘସା, ପୁରି,ଖିରୀ ଓ ପାଚିଲା କଟା ଫଳସବୁ ପ୍ରସ୍ତୁତ କରାଯାଏ । ସେଥିପାଇଁ ଘରେ ରାତିସାରା କୋଳାହଳ, ଉତ୍ତେଜନା । ରାତିଅଧକୁ ଆସନ୍ତି ଯମେଶ୍ୱରେ । ଠାକୁରେ ପଙ୍କ୍ତି ଖାଇଲା ପରେ ଘରେ ସମସ୍ତେ ଭୋଗଖାଇ ପଡ଼ିଶା ଘରମାନଙ୍କରେ ଭୋଗବାଣ୍ଟିଲାବେଳକୁ ପାହାନ୍ତା ।

ତା' ପରଦିନ ମାଉସୀନାନୀ ଘରୁ ଆମେ ବାହାରୁ ଆଈ ଘରକୁ । ଆଈ, ମୁଁ, ଜଗାଭାଇନା, ରଘୁ । ଜଗାଭାଇନା ଓ ରଘୁ ମୋ ମାଉସୀ ପୁଅ ଭାଇ । ରଘୁ ଓ ମୁଁ ଏକା ବୟସର; ଜଗାଭାଇନା ଆମଠାରୁ ଚାରି ପାଞ୍ଚବର୍ଷ ବଡ଼ ।

ପୁରୀ ଷ୍ଟେସନରୁ ବୀରପୁରୁଷୋତ୍ତମପୁର ଯାଇ ସେଠାରୁ ପାଞ୍ଚ, ଛଅ କିଲୋମିଟର ଚାଲିଯିବାକୁ ହୁଏ ଶ୍ରୀପୁରୁଷୋତ୍ତମପୁର । ରେଳଗାଡ଼ି ସମୟ ଅନୁମାନ କରି ଷ୍ଟେସନକୁ ଯିବାକୁ ହେଉଥିବାରୁ ବେଶ୍ ଆଗରୁ ଯାଇ ଅପେକ୍ଷା କରିବାକୁ ପଡ଼େ ଷ୍ଟେସନରେ । କାଳେ ଆମେ ପହଞ୍ଚିବା ଆଗରୁ ଗାଡ଼ି ଛାଡ଼ିଦେବ– ଏ ଭୟ ତ ସବୁବେଳେ ଥାଏ ମନରେ ।

ଟ୍ରେନ ଝରକା ଦେଇ ବାହାରକୁ ଅନାଇଲେ ମନେହୁଏ-ପୃଥିବୀଟା ଅହରହ ଘୁରି ବୁଲୁଛି ବୋଲି ଭୂଗୋଳ ବହିରେ ଆମେ ଯାହା ପଢ଼ିଛୁ, ତାହା ନିହାତି ସତ । ଟ୍ରେନ ଝରକା ଭିତରୁ ବେଳେବେଳେ ଦିଶେ, ନାଲିରଙ୍ଗର ଗାଡ଼ିଟା କଳା ଧୂଆଁ ଛାଡ଼ି ତେଲୁଣୀ ପୋକ ପରି ବକ୍ରଗତିରେ ଚାଲିଛି । ଚାହୁଁ ଚାହୁଁ ପଡ଼େ ବୀରପୁରୁଷୋତ୍ତମପୁର ଷ୍ଟେସନ ।

ବେଶ୍ କିଛି ବାଟ ଆଈ ଘର ଶ୍ରୀପୁରୁଷୋତ୍ତମପୁର ଗାଁଆ । ପୁରୀ ସହରର ଅଣ ଓସାରିଆ ଗଳି ଭିତରୁ, ଖୋଲା ସବୁଜ ଧାନ ବିଲ, ଆକାଶ, ପୋଖରୀ, ଗାଈପଲ ଓ ମାଳ ମାଳ ଗଛ । ଗୋଟିଏ ପୃଥିବୀ ଛାଡ଼ି ଆଉ ଗୋଟିଏ ପୃଥିବୀରେ ପହଞ୍ଚିବା ପରି

ଲାଗେ । ଆନନ୍ଦରେ ମନ କୁରୁଳି ଉଠେ । ବାଟରେ ଜାମୁଗଛମାନଙ୍କରେ ପାଚିଲା-ଅଧାପାଚିଲା କୋଳି । ସେଥିରୁ କିଛି ପାଟିରେ ପଡ଼େ । କେଉଁ ଗାଁଆ ମୁଣ୍ଡରେ ଆଈର ଚିହ୍ନା ଜଣା, କାହା ପିଣ୍ଡାରେ ବସି ପାଣି ପିଉ । ଥରେ କେଜାଣି କାହିଁକି ଟ୍ରେନ୍ ଡେରି ହୋଇଯିବାରୁ ବୀରପୁରୁଷୋତ୍ତମପୁର ଷ୍ଟେସନ୍‌ରେ ପହଞ୍ଚିବା ବେଳକୁ ସଞ୍ଜ ହୋଇଗଲା । ଗାଁଆକୁ ଯିବାକୁ ହେବ ତା'ପରଦିନ ସକାଳେ । ପରିଚିତ ଜଣକ ଘରେ ରହିଲୁ । ତାଙ୍କର ଗୋଟିଏ ବୋଲି ବଖରା । ପଖାଳ ଖାଇ ସେହି ଘରେ ଶୋଇଲୁ ସମସ୍ତେ । ମୁଁ, ଆଈ, ଜଗାଭାଇନା, ରଘୁ, ଘରର ମାଲିକ ଓ ତାଙ୍କ ସ୍ତ୍ରୀ । ବହୁତ ରାତିଯାଏଁ ଆଈ ଓ ଘରର ମାଲିକ କ'ଣ ସବୁ ଆଲୋଚନା କରୁଥିଲେ । ଜମିଜମା, ଅଭାବ, ଅସୁବିଧା କଥା । ଘରର ମାଲିକ ମୋ ଆଈକୁ ଡାକୁଥିଲେ ଦେଠେଇ ।

ସେତେବେଳେ ଶ୍ରୀପୁରୁଷୋତ୍ତମପୁରକୁ ପକ୍କା ରାସ୍ତା ନ ଥିଲା । ଶଗଡ଼ଥିଲା ସବୁଠାରୁ ସୁବିଧା ଯାନ । ସାରା ଗାଁଆରେ ସାଇକେଲ୍‌ଟିଏ ଥିବାର ମୋର ମନେ ପଡୁନାହିଁ ।

ଆଈଘରଟି ବେଶ୍ ଖୋଲା ଓ ବଡ଼ । ଦାଣ୍ଡପିଣ୍ଡା ପରେ ଦାଣ୍ଡଘର । ମଜବୁତ୍ କାଠ କବାଟ, ତା'ଉପରେ ଲୁହାର ଗୋବସବୁ । ଦାଣ୍ଡଘର ଦୁଇ ପାଖରେ ଦୁଇଟି ବଖରା, ଓ ଭିତରକୁ ଲମ୍ବାପିଣ୍ଡା । ତା'ପରେ ଅଗଣା ଓ ଅଗଣା ପରେ ହାଣ୍ଡିଶାଳ ଓ ବାଡ଼ିଘର । ଲମ୍ବା ବାଡ଼ି, ବାଡ଼ି ଶେଷରେ ପାଣିଧାରଟିଏ । ବାଡ଼ିରେ ନଡ଼ିଆଗଛ, କଇଁଆଗଛ, ଓଉଗଛ, ତାଳଗଛ । ଝାଟିମାଟି ଘରଟି ଖରାଦିନେ ବେଶ୍ ଅଣ୍ଡା । ବାଡ଼ିଘରେ ମସିଣା ପକାଇ ଶୋଇଲେ ପ୍ରଚଣ୍ଡ ଗ୍ରୀଷ୍ମଋତୁକୁ ମଧ୍ୟ ଭୁଲି ଯାଇହୁଏ ।

ଏତେବଡ଼ ଘରଟାରେ ରହିବାକୁ କେହି ନଥିଲେ ମୋ ଆଈ ଛଡ଼ା । ଅଜା, ସାବତ ମାମୁଁ ଦି'ଜଣ ବହୁ ଆଗରୁ ମରିଥିଲେ । ଆଈର ତିନି ଝିଅ ମଧ୍ୟରୁ ଦି'ଜଣଙ୍କର ବାହାହେବାର ଅଳ୍ପ କେତେବର୍ଷ ଭିତରେ ପରଲୋକ ହୋଇଥିଲା । ଆଈ ତା'ର ଏକମାତ୍ର ଜୀବିତ ଝିଅ ମାଉସୀନାନୀ ଘରେ ପୁରୀରେ ରହୁଥିଲା ବହୁ ସମୟ । ଗାଁଆକୁ ଆସୁଥିଲା ଧାନଅମଳ କରିବା ବା ସେହିପରି ଆବଶ୍ୟକତା ପଡ଼ିଲେ । ନିଜଘର ଓ ପୁରୀଛଡ଼ା ଅଳ୍ପ କେତେ ଦିନ ସେ ରହୁଥିଲା ଗିରିମା ଗାଁଆରେ, ରଇତଘରେ । ସେ ଗାଁଆରେ ତା'ର ଜମି କେତେମାଣ ଥିଲା । ରଇତଘରେ ରହି ସେ ଧାନ ଅମଳ କରୁଥିଲା । ବିଧବା ବ୍ରାହ୍ମଣୀ ଚଷାଘରେ ତ ଭାତ ଖାଇବା ମନା । ତେଣୁ ସେ ଚୁଡ଼ାଖାଇ ଦିନ ଦିନ ରଇତଘରେ ପଡ଼ି ଧାନ ଅମଳ କରୁଥିଲା । ସେଇ ଧାନ ଓ ବାଡ଼ିରୁ ମିଳୁଥିବା କିଛି କିଛି ନଡ଼ିଆ ଛଡ଼ା ଆଉ କିଛି ଆୟ ନଥିଲା ତା'ର । ବେଳେ ବେଳେ ସେ ଆମ ଘରକୁ

ଆଣୁଥିଲା ତାଳ ପୋଡ଼ପିଠା ବା ମଞ୍ଜିକଢ଼ା ମେଞ୍ଚାଏ ତେନ୍ତୁଳି । ପ୍ରତି କୁମାରପୂର୍ଣ୍ଣିମାରେ ଅବଶ୍ୟ ମୋ ପାଇଁ ଖଣ୍ଡେ ନୂଆ ଜାମା ନିୟମିତ ଆଣୁଥିଲା ସେ । ଭଣଜା ପାଇଁ ମାମୁଁ କୁମାର ପୂର୍ଣ୍ଣିମାରେ ନୂଆଜାମା ପଠାଇବା ବିଧି । ମାମୁଁ ତ ନଥିଲେ; ସେ ବିଧି ପାଳୁଥିଲା ମୋ ଆଈ ।

ମୋ ଅଜାଙ୍କ ନାମ ଚନ୍ଦ୍ରଶେଖର ମିଶ୍ର । କହିବା ଅନାବଶ୍ୟକ, ତାଙ୍କର ଫଟୋ ବା ତାଙ୍କ ସମ୍ପର୍କରେ କୌଣସ ସଠିକ୍ ବିବରଣୀ ନାହିଁ । ଆଈଠାରୁ ଶୁଣିଥିଲି, ସେ ଜଣେ ପଣ୍ଡିତ ଥିଲେ । ତାଙ୍କ କାନକୁ ଟିକିଏ କମ୍ ଶୁଭୁଥିଲା । ମୋ ଆଈ ତାଙ୍କର ଦ୍ୱିତୀୟ ସ୍ତ୍ରୀ । ଚଉଦ କି ପନ୍ଦର ବର୍ଷ ବୟସରେ ମୋ ଆଈ ତାଙ୍କୁ ବାହା ହେଲାବେଳକୁ ତାଙ୍କର ଆଈ ବୟସର ଝିଅଟିଏ ଥିଲା । ତାଙ୍କ ନାଁଆ ହୁଏତ ଥିଲା ସର- ମୋ ଆଈକୁ ଗାଁଆରେ ଅନେକେ ଡାକୁଥିଲେ ସରବୋଉ । ସର ମାଉସୀଙ୍କ ସମ୍ପର୍କରେ ମୋତେ କିଛି ଜଣାନାହିଁ ।

ଅଜା ବୋଧହୁଏ ପଚାଶ କି ବାବନ ବର୍ଷରେ ମରିଥିଲେ । ଅଜା ମଲାବେଳକୁ ମୋ ବୋଉର ବୟସ ତିନିକି ଚାରି । ମାଉସୀନାନୀକୁ ହୁଏତ ଚଉଦ କି ପନ୍ଦର ହୋଇଥିବ । ବିଧବା ହେଲା ବେଳକୁ ଆଈକୁ ହୋଇଥିବ ତିରିଶି କି ବିତିଶି ବର୍ଷ । ସେଇ ବୟସରୁ ଜମିବାଡ଼ି ବୁଝି, ତା'ର ସାମାନ୍ୟ ଆୟରେ ତିନି ତିନିଟା ଝିଅକୁ ବାହାକରି ଓ ଦୁଇଟା ଝିଅଙ୍କ ମରିବା ଦେଖି-ସେ ବଞ୍ଚିଥିଲା ପ୍ରାୟ ଅଶୀବର୍ଷଯାଏଁ । ତା'ର ମୃତ୍ୟୁ ହୋଇଥିଲା ୧୯୭୧ରେ ।

ଆଈର କହିବା ଅନୁସାରେ, ଅଜାଙ୍କ ସାଙ୍ଗେ ଦିନରେ ସେ କେବେ କଥାବାର୍ତ୍ତା ହୋଇ ନଥିଲା । ଥରେ କିନ୍ତୁ ଦିନରେ ଭୂମିକମ୍ପ ହେଲା । ଘରଟା ଦୋହଲି ଗଲା ପରି ଲାଗିଲା । ଆଈ ସେତେବେଳେ ହାଣ୍ଡିଶାଳରେ । ଅଜା ଉପରଘରୁ ପାଟିକରି କହିଲେ 'ବସିପଡ଼, ବସି ପଡ଼ ।'

ଆଈଘରେ ବିଶେଷ କିଛି ଜିନିଷପତ୍ର ନଥିଲା । ଆଈ ଥରେ ପୁରୀରେ ଥିବାବେଳେ ବାସନ କୁସନସବୁ ଚୋରି ଯାଇଥିଲା । ଉପର ଘରେ ପଡ଼ିଥିଲା ଅଜାଙ୍କ ଅମଳର ଅତି ପୁରୁଣା କଳା କିଟ୍ କିଟ୍ ଖଟଟିଏ । (ସେଇଘରେ ମୁଁ ଜନ୍ମ ହୋଇଥିଲି ଓ ମୋ ବୋଉ ମରିଥିଲା ।) ହାଣ୍ଡିଶାଳରେ କେତୋଟି ମାଟିହାଣ୍ଡି, ମାଠିଆ, କୁଲା, ବାଉଁଶିଆ ଇତ୍ୟାଦି । ବାଡ଼ିପିଣ୍ଡାରେ ଗୋଟିଏ ପଥରକୁଣ୍ଡ । ଏଠି ସେଠି ସନ୍ତରା ମସିଣା ଓ କନ୍ଥା ଖଣ୍ଡେ ଦି'ଖଣ୍ଡି ।

ଆମେ ଆଈ ଘରେ ପହଞ୍ଚିଲେ ଚୁପ୍‌ଚାପ୍ ଶୁନ୍‌ଶାନ୍ ଘରଟାର ପରିଚୟ ବଦଳିଯାଏ । ଆମକୁ ଦେଖିବାକୁ ସମସ୍ତଙ୍କ ଆଗ୍ରହ ଥାଏ ଅଧିକ । ମୋ ବୋଉ ମରିଯାଇଥାଏ-ସେଇଥିପାଇଁ ।

ଆମକୁ ଘରେ ପାଇଲେ ଆଈ ଖୁବ୍ ଉତ୍‌ଫୁଲ୍ଲିତ ଖୁବ୍ ଆନନ୍ଦିତ ଦିଶେ । ମାଟି ହାଣ୍ଡିରେ ଭାତ ରନ୍ଧା ହୁଏ; ସେଥିରେ ସିଝେ ଖଡ଼ିକାରେ ଫୋଡ଼ାହୋଇ ଛୋଟ ଛୋଟ ଆଳୁ । ଘରସାରା ଭାତଫୁଟାର ବାସ୍ନା । ମାଠିଆରେ ପୋଖରୀରୁ ଆସେ ମାଟିଆ ରଙ୍ଗର ପାଣି । କେଜାଣି କାହିଁକି ସେ ପାଣି ମୋତେ ବେଶୀ ଭଲଲାଗେ ଆମ ସହରର କଳପାଣିଠାରୁ । ଆଈ ବି କୁଆଡ଼ୁ ତୋଳିଆଣେ ମୋର ପ୍ରିୟ କଳମ ଶାଗ । କିଛି କିଛି ମୁଢ଼ି ଓ ନଡ଼ିଆ ତ ଖାଇବାକୁ ମିଳେ । ଦିନସାରା ଆମେ ତିନିଜଣ- ଜଗାଭାଇନା, ରଘୁ ଓ ମୁଁ- କୁଆଡ଼େ କୁଆଡ଼େ ବୁଲୁ । ବନ୍‌ଶୀ କଣ୍ଟା ଯୋଗାଡ଼ କରି, ବାଡ଼ିରୁ ଜିଆ ଖୋଳି, ଘଣ୍ଟା ଘଣ୍ଟା ବସୁ ଗାଁ ପୋଖରୀ କୂଳରେ । ଗାଁ ପୋଖରୀରେ ମାଛ ମାରିବାକୁ ମନା ସମସ୍ତଙ୍କୁ, କିନ୍ତୁ 'ପୁରଷ୍ତମିଆ' ପିଲାମାନଙ୍କ ପ୍ରତି ଗାଁଆର ଆଇନ୍ ଲାଗୁ ହୁଏ ନାହିଁ । ମ୍ୟାଜିକ୍ ଦେଖାଇବାପରି ପୋଖରୀର ସ୍ଥିର ପାଣିରୁ ଓଟାରିଆଣୁ ରୂପା ପରି ଚିକ୍ ଚିକ୍ ଛେଲାକେରାଣ୍ଡିସବୁ । କେରାଣ୍ଡିମାଛ ଭଜା ଖାଇବାକୁ ମିଳିଯାଏ ଯଥେଷ୍ଟ । ମାଛମାନଙ୍କ ପେଟରେ ମଞ୍ଜିଭର୍ତ୍ତି । ଖୁବ୍ ସୁଆଦିଆ ଲାଗେ ।

ରାତିରେ ଅବଶ୍ୟ ମଶାମାନେ ହଇରାଣ କରନ୍ତି ଖୁବ୍ । ମଶାରୀ ବା ମିଳନ୍ତା କୁଆଡ଼ୁ ? ରାତି ଅଧରେ ଉଠି ଆଈ କୁଟାର ଅଟାରେ ନିଆଁ ଲଗାଏ । ବହଳ ଧୂଆଁରେ ମଶାମାନେ କିଛିସମୟ ନିସ୍ତେଜ ହୋଇଯାନ୍ତି । ସକାଳ ହେଲେ ଜୁଟିଯାନ୍ତି ଗାଁଆର ପିଲାମାନେ- କୁସିନି, ଅନି, ବାଉରିଆ, ଭୋବନି । କେଉଁଠୁ ତାଳ ତୋଳି ହେବ, କେଉଁଠି କେନ୍ଦୁ ପାଚିଚି-ସବୁ ଖବର ସେମାନଙ୍କ ପାଖରେ ।

ସାତ ଆଠଦିନ ପରେ କିନ୍ତୁ ଆଈଘର ଛାଡ଼ି ଫେରି ଆସିବାକୁ ହୁଏ ପୁରୀ ପଥୁରିଆ ସାହୀ । ସୁଖର ସମୟଟା ଅତୀତ ହୋଇଯାଏ ଚାହୁଁ ଚାହୁଁ । ଆଈଘରକୁ ଯିବାପାଇଁ ଅପେକ୍ଷା କରିବାକୁ ହୁଏ ଆସନ୍ତା ଖରାଛୁଟି ଯାଏଁ ।



# ଆଈ ଗାଆଁର ଅନ୍ୟମାନେ

ଆଈ ଘରେ ପହଞ୍ଚିଲେ ପ୍ରଥମେ ମୁଁ ଯାଏ ସାନଅଜାଙ୍କୁ ଦେଖିବାକୁ । ସାନଅଜା ମୋ ଅଜାଙ୍କର ସମ୍ପର୍କୀୟ ଭାଇ । ଆଈଘର ଗୋଟିଏ ଘର ଛାଡ଼ି ତାଙ୍କର ଘର । ସେ ଜାକିଜୁକି ହୋଇ ବସିଥାନ୍ତି ମାଟି ଦାଣ୍ଡ ପିଣ୍ଡା କୋଣରେ । ମୁଁ ନମସ୍କାର କଲେ ସେ ଚଉଡ଼ା ହସଟିଏ ହସି ପଚାରନ୍ତି, ''କେତେବେଳେ ଆସିଲ ?'' ତା'ପରେ ବେଶ୍ କିଛି ସମୟ ଚାଲେ ଆମର କଥାବାର୍ତ୍ତା ।

ସାନଅଜା ଓ ତାଙ୍କ ଘରର ସମସ୍ତଙ୍କୁ ମୁଁ ଖୁବ୍ ଭଲ ପାଉଥିଲି । ସାନଅଜା ଖୁବ୍ ଗୋରା; ଏକଦା ବଳିଷ୍ଠ ସ୍ୱାସ୍ଥ୍ୟ ଥିଲା, ବର୍ତ୍ତମାନ ସେଇ ସ୍ୱାସ୍ଥ୍ୟ ଛାଞ୍ଚଟି ରହିଯାଇଛି । ବଡ଼ପାଟିରେ ସ୍ପଷ୍ଟ ସ୍ୱର ରେ କଥା କହନ୍ତି; ଆଖି ଦୁଇଟି ଜଳ ଜଳ ସ୍ଥିର- କଥା କହିଲା ବେଳେ ମୁହଁକୁ ସିଧା ଚାହାନ୍ତି ନାହିଁ । ହୁଏତ ତାଙ୍କୁ ଭଲ ଦେଖାଯାଉନଥିଲା, କିମ୍ବା ଦେଖାଯାଉଥିଲା ଖୁବ୍ କମ୍ । ସେଇଥିପାଇଁ ହୁଏତ ବହୁ ସମୟ ସେ ଚୁପ୍ ଚୁପ୍ ଦାଣ୍ଡପିଣ୍ଡାରେ ବସି ରହୁଥିଲେ; କିଏ କଥାଭାଷା ହେବାକୁ ଜୁଟିଗଲେ ଖୁବ୍ ଉଦ୍‌ଫୁଲ୍ଲିତ ହେଉଥିଲେ ।

ସାନଆଈ ଅତି କର୍ମଠ, ଜଞ୍ଜାଳୀ ମଣିଷ । ତିନି ପୁଅ- ଜଣେ ସେତେବେଳକୁ ବି.ଏ. ପାଶ୍ କରି ପୁରୀ ଏ.ଜି. ଅଫିସ୍‌ରେ କିରାଣୀ ହୋଇ ସାରିଲେଣି । ଶ୍ରୀପୁରୁଷୋତ୍ତମପୁରରେ ତାଙ୍କ ଆଗରୁ ଆଉ କିଏ ଗ୍ରାଜୁଏଟ୍ ହୋଇଥାନ୍ତି କି ନା ସନ୍ଦେହ । ସେଇଥିପାଇଁ ଗାଁଆରେ ସାନଅଜାଙ୍କ ପରିବାରର ସମ୍ମାନ ବେଶୀ । ଖାଲି ସେତିକି ନୁହେଁ, ସାନଅଜାଙ୍କ ତଳ ଭାଇ ସେ କାଳରେ ମାଟ୍ରିକ୍ ପାଶ୍‌କରି ରେଲ୍‌ଓ୍ୱରେ ଚାକିରୀ କରୁଥାନ୍ତି । ସବା ସାନଭାଇ ରହୁଥାନ୍ତି ଖଳାବାଡ଼ିରେ- ଘରଠାରୁ ଟିକିଏ ଦୂରରେ- ତାଙ୍କୁ କୌଣସି ଦୁରାରୋଗ୍ୟ ବ୍ୟାଧି ହୋଇଥାଏ । ସେ କାହାସଙ୍ଗେ ମିଳା ମିଶା ନକରି ଅଲଗା ରହୁଥାନ୍ତି; ଅଳ୍ପ ଅଳ୍ପ ଦାଢ଼ୀ ବଢ଼ାଇଥାନ୍ତି । ତାଙ୍କର ସ୍ତ୍ରୀ ନଥାନ୍ତି । ଖୁବ୍ ସକାଳୁ ଗାଁଆର ସମସ୍ତେ

ଉଠିବା ଆଗରୁ ପୋଖରୀରେ ସେ ସାରି ଦିଅନ୍ତି ଗାଧୁଆ ପାଧୁଆ । ସମସ୍ତେ ବ୍ୟବହାର କରୁଥିବା ଘାଟରେ ନୁହେଁ; ତାଙ୍କ ଖଳାବାଡ଼ିକୁ ଲାଗିଥିବା ପୋଖରୀ କୂଳରେ । ସେଖୁବ୍ ରାଗୀବୋଲି ଶୁଣିଥିଲି । ମୁଁ କିନ୍ତୁ ତାଙ୍କ ଖଳାବାଡ଼ିକୁ ଯାଇ ତାଙ୍କ ସହିତ କେତେଥର କଥାଭାଷା ହୋଇଛି । ମୋ ପ୍ରତି ସେ ଭଲ ବ୍ୟବହାର କରୁଥିଲେ; ମୋ ଉପରେ କେବେ ରାଗି ନଥିଲେ ।

ସାନ ଅଜାଙ୍କର ଏଇଦୁଇ ଭାଇଙ୍କ ବ୍ୟତୀତ ଆଉ ଜଣେ ଭାଇ ମରି ଯାଇଥିଲେ । ତାଙ୍କର ସ୍ତ୍ରୀ ବାଡ଼ି ପିଣ୍ଡାରେ ବସି ସବୁବେଳେ ମନକୁ ମନ କାହାକୁ ଗାଳି ଦେଉଥାନ୍ତି । ତାଙ୍କୁ ବି କିଛି ଦୁରାରୋଗ୍ୟ ବ୍ୟାଧି ହୋଇଥାଏ ।

ସାନଅଜାଙ୍କର ଥିଲେ ତିନି ପୁଅ । ମଝିଆଁ ଦଶମ ଯାଏଁ ପଢ଼ି ଜମିବାଡ଼ି ବୁଝିବା ଆରମ୍ଭ କରି ଦେଇଥିଲେ । ସାନପୁଅ ଭଲ ପଢୁଥିଲେ । ତା'ଛଡ଼ା ମରିଯାଇଥିବା ଭାଇଙ୍କ ପୁଅ ରହୁଥିଲେ ତାଙ୍କ ସହିତ । ରେଲ୍‌ୱେରେ ଚାକିରୀ କରୁଥିବା ଭାଇ ରହୁଥିଲେ ବାହାରେ; କେବେ କିପରି ଆସୁଥିଲେ ଗାଁଆକୁ ପିଲାମାନଙ୍କୁ ନେଇ ।

ସାନଅଜାଙ୍କ ମଝିଆଁ ପୁଅ, ସାନପୁଅ ଓ ପୁତୁରାଙ୍କ ସହିତ ମୋର ଖୁବ୍ ବନ୍ଧୁତା ଥିଲା । ତାଙ୍କ ଘରଟି ମୋତେ ଆକର୍ଷଣ କରୁଥିଲା ଖୁବ୍ । ବେଶ୍ ଚଳନ୍ତି ଘର । ଖଟତଳ ସାରା ଛଣ ଉପରେ ପାଚିଲା ଆମ୍ବ, ଅଗଣା ପାଖ ପିଣ୍ଡା ଉପରେ ଓଳିଆ ଓଳିଆ ଧାନ । ଘର ସାମ୍ନା ଗୁହାଳରେ ଗାଈ । ଖଳାବାଡ଼ିରେ ନଡ଼ିଆ, ତାଳ, ଆମ୍ବ ଓ ଅନ୍ୟାନ୍ୟ ଗଛ । ଖଳାବାଡ଼ିକୁ ଗାଁ ପୋଖରୀ ଲାଗିଥିବାରୁ ରାତିରେ ପୋଖରୀରେ ସେମାନେ ବୁଡ଼ାଇ ରଖନ୍ତି ରୋଦୁଅଟିଏ; ତା ଭିତରେ ମେଞ୍ଚାଏ ଗୋବର । ସକାଳୁ ରୋଦୁଅଟିକୁ ପାଣିରୁ ଟେକି ଆଣିଲେ ସେଥିରେ ଆଞ୍ଜୁଳା ଆଞ୍ଜୁଳା ଚୁନାମାଛ ।

ସାନଅଜାଙ୍କ ପୁଅ ପୁତୁରାମାନେ ବାଡ଼ିରେ ତିଆରି କରିଥାନ୍ତି ମାଟି, ବାଉଁଶ ଓ ନଡ଼ିଆ ବାହୁଙ୍ଗାରେ ଛୋଟ ଘରଟିଏ । ମୋତେ ଖୁବ୍ ଭଲ ଲାଗେ ସେଇ ଘରଟି ।

ଥରେ ଗାଁଆରେ ଦାସକାଠିଆ ହେଉଥାଏ - ସାନଅଜାଙ୍କ ଘର ସାମ୍ନାରେ । ରାତି କେତେ ହୋଇଥାଏ କେଜାଣି, ମୋତେ ନିଦ ଲାଗି ଆସୁଥାଏ । ଦାସକାଠିଆବାଲାମାନେ କହୁଥାନ୍ତି ଗୀତରେ ଗୀତରେ - ଯେ ସେମାନେ ଏମିତି ଏକ ଗାଁଆକୁ ଯାତ୍ରା କରିବାକୁ ଆସି ବହୁତ ଖୁସୀ । ଗାଁଆବାଲାମାନେ ସତରେ ଖୁବ୍ ଅତିଥିପରାୟଣ । ଏତେ ଚୁଡ଼ାଘଷା କରିଥିଲେ ଯେ ସେମାନେ ପେଟପୁରା ଖାଇ ସାରି ଆଉରି ବଳିଲା ଓ ସେମାନେ ବେତାବେତା ଚୁଡ଼ାଘସା ବୋହିନେଲେ ନିଜ ଗାଁଆକୁ-ନିଜ ପିଲା ଓ ଗାଁ ଲୋକଙ୍କ ପାଇଁ । ତଥାପି ଆଉରି ଚୁଡ଼ାଘଷା ବଳିଲା ।

ହଠାତ୍ କ'ଣ ହେଲା କେଜାଣି, ଦାସକାଠିଆ ମଝିରେ ଗାଁଆରେ ସମସ୍ତେ ଠିଆ ହୋଇପଡ଼ି ପାଟିତୁଣ୍ଡ ଆରମ୍ଭ କରିଦେଲେ । ସାନଅଜାଙ୍କ ବଡ଼ପୁଅ ସେତେବେଳେ ଗାଁଆକୁ ଆସିଥାନ୍ତି । ସେ ବେଶ୍ ବଡ଼ ପାଟିରେ ପ୍ରତିବାଦ କରୁଥାନ୍ତି ଦାସକାଠିଆବାଲାଙ୍କ ଗୀତର । ସେ ଏତେ ରାଗି ଯାଇଥାନ୍ତି ଯେ ମଝିରେ ମଝିରେ କହି ପକାଉଥାନ୍ତି ଇଂରାଜୀ ଶବ୍ଦ ବା ବାକ୍ୟ ଗୋଟିଏ ଦୁଇଟି ।

ମୁଁ ଅବଶ୍ୟ ଘଟଣାଟା ବୁଝିଲି ଟିକିଏ ଡେରିରେ । ଦାସକାଠିଆବାଲାଙ୍କର ଖାଇବା ପିଇବାର ଭଲ ବ୍ୟବସ୍ଥା କରିନଥିଲେ ଶ୍ରୀପୁରୁଷୋତ୍ତମପୁରୀଆମାନେ । ସେଇଥିପାଇଁ ଗୀତରେ ସେମାନେ ଥଟ୍ଟା କରୁଥିଲେ ଗ୍ରାମବାସୀଙ୍କୁ । ପରିଣତି ଏପରି ପ୍ରତିବାଦ । ଅଳ୍ପସମୟପରେ ଅବଶ୍ୟ ଗଣ୍ଡଗୋଳ ତୁଟିଲା ଓ ଦାସକାଠିଆ ଆରମ୍ଭ ହେଲା ଯଥାରୀତି ।

ପୁରୁଷୋତ୍ତମପୁରକୁ ଗଲେ ସାନଅଜାଙ୍କ ପରିବାର ସହିତ ମୁଁ ସମ୍ପର୍କ ରଖୁଥିଲି ନିୟମିତ । ସାନଆଈ ବେଳେ ବେଳେ ଆଈ ପାଖକୁ ଆସି ସୁଖଦୁଃଖ ହେଉଥିଲେ ।

ସେତେବେଳକୁ ମୁଁ ନବମ କି ଦଶମ ଶ୍ରେଣୀରେ ପଢ଼ିଲିଣି । କିଛି ଗୋଟାଏ ଗୁରୁତର ଘଟଣା ଘଟି ଯାଇଥାଏ ସାନଅଜାଙ୍କ ପରିବାରରେ । ସାନଆଈ ତାହା ବର୍ଣ୍ଣନା କରୁଥାନ୍ତି ମୋ ଆଈଆଗରେ । ମୁଁ ସେଠାରେ ଥାଇ ସବୁ ଶୁଣୁଥାଏ । ମୋ ଉପସ୍ଥିତିକୁ ଆଈ କି ସାନଆଈ କେହି ଗୁରୁତ୍ୱ ଦେଉନଥାନ୍ତି । ମୁଁ ବହୁତ ସାନ ହୋଇଥିବାରୁ କଥାଟା ବୁଝିପାରିବି ନାହିଁ - ଏଇୟା ହୁଏତ ଭାବିଥାନ୍ତି ସେମାନେ । ମୁଁ ପ୍ରକୃତ ସମସ୍ୟାର ଅର୍ଥ ବୁଝେ କି ନା - ସାନଆଈଙ୍କ କଥା ଶୁଣୁଥାଏ ମନ ଦେଇ ଓ ବୁଝିବାକୁ ଚେଷ୍ଟା କରୁଥାଏ ।

ସମସ୍ୟାଟି ସାନଆଈଙ୍କ ମଝିଆଁପୁଅଙ୍କ ବାହାଘର ସମ୍ପର୍କରେ । ତାଙ୍କର ବାହାଘର ହୋଇଯାଇଥାଏ ଯା'ଭିତରେ - କେତେ ମାସ ତଳେ । ପାଖ ଶାସନ ଗାଁଆରୁ ଆସିଥାଏ ବୋହୂଟିଏ । କ'ଣ ଯେମିତି ବିଗିଡ଼ି ଯାଇଥିଲା ବାହାଘରରେ - ଗାଁ ସାରା ଚୁପ୍ ଚୁପ୍ - ଫୁସ୍ ଫୁସ୍ ଚାଲିଲା । ଶେଷରେ କଥାଟା ସାନଆଈଙ୍କ କାନକୁ ମଧ୍ୟ ଆସିଲା । ବୋହୂ କୁଆଡ଼େ ଆରମ୍ଭ କରିଛି ଅପବାଦଟାଏ -ଯେ ତା ସ୍ୱାମୀଟା ନପୁଂସକ !

ସାନଆଈ କହୁଥାନ୍ତି- ତାଙ୍କ ପୁଅ ଆଦୌ ନପୁଂସକ ନୁହେଁ । ତାଙ୍କ କଥାକୁ ସମର୍ଥନ କରୁଥିବା କାହା କାହା ନାମ ମଧ୍ୟ ସେ ଦୋହାରାଉଥାନ୍ତି । ବୋହୂର ଚରିତ୍ର ସମ୍ପର୍କରେ ନାନା ଅଭିଯୋଗ ମଧ୍ୟ ସେ କରୁଥାନ୍ତି- ବୋହୂ ଚାହୁଁଚି ବାହାହେବାକୁ ତା ଦିଅରକୁ, ଇତ୍ୟାଦି ।

ସାନଆଈଙ୍କଠାରୁ ଏତକି ଶୁଣିବାର ଦିନେ ଦୁଇଦିନ ପରେ ମୁଁ ଯାଇଥିଲି ମୋର ଜଣେ ମଉସାପୁଅ ଭାଇଙ୍କ ଶ୍ୱଶୁର ଗାଁଆକୁ । ସାନ ଆଈଙ୍କ ବୋହୂଙ୍କ ବାପଘରଟି ମଧ୍ୟ ସେଇ ଗାଆଁରେ । ବୋହୁଙ୍କ ନନା ଆସି ତାଙ୍କ ଦୁଃଖ ବର୍ଣ୍ଣନା କରୁଥିଲେ କାହାଆଗରେ । ତାହାମଧ୍ୟ ମୁଁ ଶୁଣିଲି । ସେ କହୁଥିଲେ-କିପରି ଧାର ଉଧାର କରି ଝିଅଟାକୁ ସେ ବାହା କରିଥଲେ ଓ ଶେଷରେ ଭଗବାନ ତାଙ୍କୁ କି ଦଣ୍ଡ ଦେଲେ ! ସେ ମହାଶୟ ସକାଳୁ ଗାଧୋଇପାଧୋଇ ଗାଁ ମନ୍ଦିରରେ ପୂଜାଦି ସମାପନ କରି କାହା ପିଣ୍ଡାରେ ଅଟକି ଯାଇଥିଲେ ବର୍ଣ୍ଣନା କରିବାକୁ ଝିଅ ବାହାଦେବାର ଦୁଃଖ । ତାଙ୍କର ତମ୍ବାରଙ୍ଗର ତେଜିୟାନ୍ ଚେହେରା, ବେକରେ ରୁଦ୍ରାକ୍ଷମାଳି, କାନ୍ଧରେ ଶୁଭ୍ର ପଇତା ଓ ହାତରେ ଚିକ୍ ଚିକ୍ ପିତଳ ସାମୁସେଇ ଓ ଦୁଃଖରେ ଓଦା ସ୍ୱର ମୁଁ କେବେ ଭୁଲିପାରିବି ନାହିଁ ।

ପରେ ଶୁଣିଲି, ବୋହୂ ସାନଅଜାଙ୍କ ଘର ଛାଡ଼ି ବାପ ଘରକୁ ଫେରିଗଲେ । ପରେ ମାଟ୍ରିକଯାଏଁ ପଢ଼ି କୌଣସି ପ୍ରାଇମେରୀ ସ୍କୁଲରେ ଶିକ୍ଷୟତ୍ରୀ ହେଲେ । ସାନଅଜାଙ୍କ ମଝିଆଁପୁଅଙ୍କର କିଛି ଦିନ ପରେ ମୃତ୍ୟୁ ହେଲା । ତାଙ୍କ ପରି ସ୍ୱାସ୍ଥ୍ୟବାନ ସୁନ୍ଦର ଯୁବକଙ୍କ ଅକାଳମୃତ୍ୟୁରେ କିଛି ଅସ୍ୱାଭାବିକତା ଥିଲା ହୁଏତ ।

ଥରେ ଶ୍ରୀପୁରୁଷୋତ୍ତମପୁର ଗାଁଆରେ ଥିବାବେଳେ ଶୁଣିଲି, ରାତିରେ ଚଡ଼କ ମାରି ମଧୁ ମିଶ୍ରେ ମରି ଯାଇଛନ୍ତି । ମଧୁ ମିଶ୍ରଙ୍କୁ ମୁଁ ଚିହ୍ନିଥିଲି । ପତଳା ଓ ଗୋରା; ଛାତି ଓ କାନ ପାଖରେ ମେଞ୍ଚାଏ ଲେଖାଏଁ ରୁମ; ଠୋ-ଠୋ କଥା କହନ୍ତି; କଥାକଥାକେ ଥଟ୍ଟା ଓ ଦୋ-ଅକ୍ଷରୀ । ନନାଙ୍କ ସହିତ ଖୁବ୍ ମିଳି ଯାଉଥିଲା ତାଙ୍କ ଚେହେରା । ନନାଙ୍କୁ ସେ ଥଟ୍ଟା କରୁଥିଲେ ଖୁବ୍ - ଗାଁ ପୋଖରୀ କୂଳରେ । ତାଙ୍କ ଘରକୁ ଯାଇ ଦେଖିଲି - ଦାଣ୍ଡଘରେ ସେନ୍ତେରା ମସିଣାଟାରେ ଘୋଡ଼ା ହୋଇ ଥୁଆ ହୋଇଚି ତାଙ୍କର ଶବଟା - ସଫା ଦେଖାଯାଉଚି ତାଙ୍କ ପାଦତଳର ତଳିପା । କେହି ଜଣେ ଫୁସ୍ ଫୁସ୍ ପ୍ରଚାର କରିଥାଏ- ଯଦି ଆଉଥରେ ଚଡ଼କ ମାରେ, ତେବେ ପୁଣି ବଞ୍ଚି ଉଠିବେ ମଧୁ ମିଶ୍ରେ ।

ଆଉଥରେ ଚଡ଼କ ମାରିଥିଲା କି ନାହିଁ, ମୁଁ ଜାଣେ ନାହିଁ ।

ବର୍ଷରେ ସାତଆଠଦିନ ପାଇଁ ଯାଉଥିଲେ ମଧ୍ୟ ଆଈ ଗାଁଆକୁ ମୁଁ ନିଜ ଗାଁଆ ବୋଲି ଭାବୁଥିଲି । ଗାଁଆର ପିଲାମାନଙ୍କ ସଙ୍ଗେ ପୁରାପୁରି ସାମିଲି କରିଦେଉଥିଲି ମୁଁ ନିଜକୁ । ମାଛ ମାରିବା, ଗାଁ ପୋଖରୀର ଗୋଟିଏ କୂଳରୁ ଆର କୂଳକୁ ପହଁରିବାଯିବାଠାରୁ ଆରମ୍ଭ କରି ଗାଁଆର କ୍ଲବ, ନାଟକ - ସବୁଥିରେ ଥିଲା ମୋର ଆଗ୍ରହ ଓ ଆନନ୍ଦ । ଥରେ ଗାଁ ପିଲାଙ୍କ ନାଟକର ଆରମ୍ଭରେ ମୋତେ ଆୟୋଜକମାନଙ୍କୁ

ପକ୍ଷରୁ ଦର୍ଶକମାନଙ୍କୁ ସ୍ୱାଗତ କରିବାକୁ କୁହାଯାଇଥିଲା । ସହରରେ ପଢୁଥିବାରୁ ଓ ଭଲ ଛାତ୍ର ଥିବାରୁ ଅନ୍ୟପିଲାମାନେ ମୋତେ ଟିକିଏ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖୁଥିଲେ ନିଶ୍ଚୟ । ଥରେ ଗାଁ ପିଲାମାନେ କୌଣସି ଅନୁଷ୍ଠାନଟିଏ ଗଢ଼ି ଆର୍ଥିକ ସାହାଯ୍ୟ ପାଇଁ ଜଣେ ଧନୀ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କଲେ । ଜଣଙ୍କ ମାଟି ଦାଣ୍ଡଘରେ ଚୌକିଟିଏ ଓ ସପ ମସିଣା ଇତ୍ୟାଦି ପଡ଼ିଲା । ଯଥା ସମୟରେ ନିମନ୍ତ୍ରିତ ଅତିଥି ସମାଗତ ହେଲେ ।

ଅତିଥି ଥିଲେ କଳା, ପତଳା ଓ ଦୁର୍ବଳ ବ୍ୟକ୍ତି । କିନ୍ତୁ ଗାଁ ପିଲାମାନେ ତାଙ୍କୁ ଯେତିକି ଆର୍ଥିକ ସାହାଯ୍ୟ ମାଗିଥିଲେ, ତାହାଠାରୁ ଢ଼େର ଅଧିକ ଅର୍ଥ ସେ ପଠାଇ ଦେବେ ବୋଲି ପ୍ରତିଶ୍ରୁତି ଦେଲେ ।

ପ୍ରତିଶ୍ରୁତି ଅର୍ଥ ବା ତାହାର ଭଗ୍ନାଂଶଟିଏ ଗାଁ ପିଲାଙ୍କ ନିକଟରେ କେବେ ପହଞ୍ଚି ନଥିଲା । ପଛରେ ଅନେକେ କୁହାକୁହି ହେଲେ, ସେ ବ୍ୟକ୍ତି ପ୍ରକୃତରେ ଥିଲେ ଜଣେ ପାଗଳ !



# ଦେଠେଇ ଗାଁ

ଶ୍ରୀପୁରୁଷୋତ୍ତମପୁର ବ୍ୟତୀତ ଆଉ ଗୋଟିଏ ଗାଁକୁ ମୁଁ ପିଲାଦିନେ ଯାଉଥିଲି ଅନେକ ଥର । ସେ ହେଉଛି ମୋ ଦେଠେଇ ଗାଁ ବୀରବଳଭଦ୍ରପୁର । କାନକାଦେଇପୁର ରେଳଷ୍ଟେସନରେ ଓହ୍ଲାଇ ଚନ୍ଦନପୁର ଦେଇ ସେ ଗାଁଆକୁ ଯିବାକୁ ହୁଏ । ରେଳଷ୍ଟେସନରୁ ଦୁଇତିନି କିଲୋମିଟର ବାଟ ।

ମୋ ନିଜର ଦୁଇଜଣ ମାମୁଁ ଥିଲେ । ସେମାନେ ଥିଲେ ମୋ ଆଈର ସାବତ ପୁଅ- ଅର୍ଥାତ୍ ମୋ ଅଜାଙ୍କ ପ୍ରଥମ ସ୍ତ୍ରୀଙ୍କ ପୁଅ । ଅଜାଙ୍କ ପ୍ରଥମ ସ୍ତ୍ରୀଙ୍କର ମୃତ୍ୟୁ ହେବାରୁ ଅଜା ଦ୍ୱିତୀୟଥର ବିବାହ କରିଥିଲେ । ଜଣେ ମାମୁଁ ବର୍ମା ଦେଶରେ ହୋମିଓପାଥି କରୁଥିଲେ ବୋଲି ଶୁଣିଛି । ଦେଶ ସ୍ୱାଧୀନ ହେବା ଆଗରୁ ବହୁ ଓଡ଼ିଆ ବର୍ମା ଦେଶରେ ଝୋଟ କଳମାନଙ୍କରେ କାମ କରୁଥିବା ସମସ୍ତେ ଜାଣନ୍ତି । କୁହାଯାଏ- ସେମାନେ ଏତେ ସଂଖ୍ୟାରେ ସେଠାରେ ଥିଲେ ଯେ ରଥଯାତ୍ରା ଓ ଓଡ଼ିଆ ପର୍ବପର୍ବାଣିମାନ କରୁଥିଲେ । ଓଡ଼ିଆରେ ଚଟିବହିସବୁ ମଧ୍ୟ ଛପା ହେଉଥିଲା । ଦେଶ ସ୍ୱାଧୀନ ନେବା ପରେ ଅଧିକାଂଶ ଓଡ଼ିଆ ଓଡ଼ିଶା ଫେରିଆସିଲେ; କେତେକ ବର୍ମାରେ ରହିଗଲେ ମଧ୍ୟ । ବର୍ମା ଫେରନ୍ତା ଓଡ଼ିଆମାନେ ଏକ ଆସୋସିଏସନ୍ କରି ଓଡ଼ିଶାରେ କେତକ ସୁବିଧା ସୁଯୋଗ ଦାବୀ କରୁଥିଲେ ।

ମୋ ମାମୁଁ କେଉଁ ପରିସ୍ଥିତିରେ ବର୍ମା ଯାଇଥିଲେ, ଜାଣିବାର ଉପାୟ ନାହିଁ । ତେବେ ସେଇଠାରେ ତାଙ୍କର ମୃତ୍ୟୁ ହୋଇଥିଲା । ଆଉ ଜଣେ ମାମୁଁ ଅନ୍ୟ କେଉଁ ପରିବାରକୁ ପୁଅ ହୋଇଯାଇଥିଲେ । ସେ ପୁରୀରେ ରହୁଥିଲେ । ମୁଁ ତାଙ୍କୁ ବୋଧହୁଏ ଥରେ ମାତ୍ର ଦେଖିଛି । ଆଈ ସାଙ୍ଗେ ମୁଁ ତାଙ୍କ ଘର କୁ ଯାଇଥିଲି । ସେ ଘୋଡ଼ିହେଲାଟିଏ ଘୋଡ଼ିହୋଇ ତଳେ ଜାକିଜୁକି ହୋଇ ବସି ମଜା କଥା କହୁଥିଲେ । ତାଙ୍କର ବି ଅଳ୍ପଦିନ ପରେ ମୃତ୍ୟୁ ହୋଇଥିଲା ।

ଦେଠେଇର ଭାଇମାନେ ନିୟମିତ ଆମ ଘରକୁ ଆସୁଥିଲେ ଓ ସେମାନଙ୍କ ସହିତ ମୋର ନିକଟ ସମ୍ପର୍କ ଥିଲା । ଚମ୍ପକ ଦ୍ୱାଦଶୀମାନଙ୍କରେ ବୀରବଲଭଦ୍ରପୁର ଯିବାରେ ସେମାନଙ୍କୁ ଭଲଭାବରେ ଜାଣିଥିଲି ।

ସାକ୍ଷୀଗୋପାଳ ନିକଟସ୍ଥ ବ୍ରହ୍ମଣ ଶାସନମାନଙ୍କର ଚେହେରା ମୋଟାମୋଟି ଏକାପରି । ବୀରବଲଭଦ୍ରପୁରରେ ଦୁଇଟି ଭାଗ ବା ଖଣ୍ଡି । ଗାଁଆର ଗୋଟିଏ ମୁଣ୍ଡେ ଗୋପୀନାଥଙ୍କ ମନ୍ଦିର; ଅନ୍ୟମୁଣ୍ଡେ ସୋମନାଥଙ୍କ ମନ୍ଦିର । ମନ୍ଦିରମାନଙ୍କ ନିକଟରେ ପୋଖରୀ । ଅଳ୍ପ ଦୂରରେ ଦୋଳବେଦୀ । ଗ୍ରାମର ରାସ୍ତା କଚ୍ଚା ଓ ପ୍ରଶସ୍ତ; ରାସ୍ତା ଦୁଇପାଖେ ଦୁଇଧାଡ଼ି ଚାଳଘର । ଘରମାନଙ୍କ ସାମ୍ନାରେ ଗୁଆ ଓ ନଡ଼ିଆ ଗଛ, ପଛରେ ଲମ୍ୱା ବାଡ଼ି ଓ ବାଡ଼ି ଶେଷରେ ଗଡ଼ିଆ ଓ ବିଲ । ଅଧିବାସୀମାନେ କେବଳ ବ୍ରାହ୍ମଣ । ପ୍ରାୟତଃ ଗୋଟିଏ ବା ଅଳ୍ପକେତୋଟି  ପରିବାର ବଢ଼ି ବଢ଼ି ଗାଁଆର ଜନସଂଖ୍ୟା ସୃଷ୍ଟି ହୋଇଥିବାରୁ ଗାଁ ଲୋକଙ୍କ ଚେହେରାରେ ସାମଞ୍ଜସ୍ୟ ଲକ୍ଷ୍ୟ କରିବା କଠିନ ନୁହେଁ । ବ୍ରହ୍ମଣମାନଙ୍କୁ ଛାଡ଼ି ଦେଲେ ଗାଁଆ ଠାରୁ ଦୂରରେ ରହନ୍ତି ବାଉରୀମାନେ । ମୋଟାମାଟି ସେମାନେ ବ୍ରାହ୍ମଣମାନଙ୍କ ସେବା କରିଥାନ୍ତି ।

ଚାଳିଶିବର୍ଷ ତଳର ଏହି ପରିସ୍ଥିତି ଏ ଯାଏଁ ପ୍ରାୟ ବଦଳି ନାହିଁ ବୋଲି ମୋର ବିଶ୍ୱାସ ।

ବୀରବଲଭଦ୍ରପୁରରେ ଦେଠେଇ ଘରେ ଦେଠେଇର ବୋଉ ଅର୍ଥାତ୍ ଆଈ, ଦେଠେଇର ବଡ଼ଭଉଣୀ ଅର୍ଥାତ୍ ମାଉସୀନାନୀ ଓ ତିନିଭାଇ-ବଡ଼ମାମୁଁ, ମଝିଆଁ ମାମୁଁ ଓ ସାନାମାଁମୁ । ଅଜା ମରିଯାଇଥାନ୍ତି । ଆଈ ଗେଡ଼ି, ସବୁବେଳେ କିଛି ନା କିଛି କାମରେ ଲାଗିଥାନ୍ତି । ମାଉସୀନାନୀ ମଧ୍ୟ ବାଳଶ୍ରୀ ବିଧବା ହୋଇ ବାପଘରେ ରହୁଥାନ୍ତି । ତାଙ୍କର ପିଲାଛୁଆ ନଥାନ୍ତି; ବାପଘରର ସୁଖଦୁଃଖ ସଙ୍ଗେ ସମ୍ପୂର୍ଣ୍ଣ ମିଶେଇ ଦେଇଥାନ୍ତି ନିଜକୁ । ଏକାଦଶୀ ଓ ଅନ୍ୟାନ୍ୟ ଭଲ  ଦିନମାନଙ୍କରେ ଆଈ ଓ ମାଉସୀନାନୀ ଆସନ୍ତି  ପୁରୀ । ଜଗନ୍ନାଥଙ୍କ ଦର୍ଶନ କରି ଅଭଡ଼ା ଖାଇ ଫେରିଯାନ୍ତି ଗାଁଆକୁ ।

ବଡ଼ମାମୁଁ କୃଷ୍ଣଚନ୍ଦ୍ର ମିଶ୍ର ଅତି ସାଧାସିଧା, ସରଳ, ଅମାୟିକ ଗାଁଉଲି ମଣିଷ । ଜମିବାଡ଼ି ବୁଝାବୁଝି କରି ଚଳନ୍ତି । ତାଙ୍କୁ ମୁଁ ଖୁବ୍ ଭଲ ପାଉଥିଲି । ସକାଳୁ ଗାଧୋଇପାଧୋଇ ସେ ଚୁଡ଼ା- କଦଳୀ ଚକଟା ଜଳଖିଆ କରୁଥିଲେ  ଓ ସବୁପିଲାଙ୍କୁ ଧରାଇ ଦେଉଥିଲେ ସେଥିରୁ ମେଞ୍ଚାଏ ଲେଖାଏଁ । ଥରେ ମୁଁ ଯାଇଥାଏ ବୀରବଲଭଦ୍ରପୁର । ସଞ୍ଜରେ ଟିକିଏ ଡେରିରେ ଘରକୁ ଫେରିଲି । ଦାଣ୍ଡଘର ଅନ୍ଧାର । ଘର ଭିତରକୁ ପଶିଲା ବେଳକୁ କାହା ଉପରେ ପାଦ ପଡ଼ିଗଲା । ବଡ଼ମାମୁଁ ସପ ଏବେ

ମସିଣାଟାଏ ପକାଇ ଶୋଇଥିଲେ ସେଘରେ । ଟିକିଏ ବି ରାଗିଲେ ନାହିଁ; ଏମିତି ଥଣ୍ଡା ମଣିଷ ଥିଲେ ସେ ।

କମ୍ ବୟସରେ ବଡ଼ମାମୁଁଙ୍କ ଦେହ ଖରାପ ହେଲା । ନାନା ଔଷଧ ଖାଇବା ପରେ କିଛିଦିନ ସେ କଟକ ବଡ଼ ଡାକ୍ତରଖାନାରେ ରହିଲେ । ସେଠାରେ ମଧ୍ୟ ଭଲ ହେଲେ ନାହିଁ । ଗାଁଆକୁ ଫେରିଲେ । ତାଙ୍କର ଗୋଟିଏ ଗାଲରେ ଘା'ଟିଏ ହୋଇଥିଲା । ତା'ଉପରେ ସେ ତୁଳସୀପତ୍ରଟିଏ ପଟି ପକାଉଥିଲେ । ଆଉ ଯାହାକୁ ଦେଖିଲେ କାକୁତି କରିବା ପରି କହୁଥିଲେ, ''ଆରେ ଟିକିଏ ଦିଅଁଙ୍କୁ ଡାକ । କୁଷଁ କେମିତି ଭଲ ହୋଇଯାଉ ।''

ବଡ଼ମାମୁଁ ଭଲ ହେଲେ ନାହିଁ । ଦିନେ ଖରାବେଳେ କେହି ଜଣେ ଆସି ଦେଉଠେଇକୁ ଖବର ଦେଲା, ''ତୁମ ଭାଇନା ଚାଲିଗଲେ ।'' ଦେଉଠେଇ କନ୍ଦାକଟା ନ କରି ଅନେକ ସମୟ ଗୁମ୍ ହୋଇ ବସିରହିଲା । ମଝିରେ ମଝିରେ ଦୀର୍ଘଶ୍ୱାସ ପକାଉଥାଏ । ତା'ପୂର୍ବଦିନ ରାତିରେ ଆମ ସାହୀରେ ଚଇତି ଘୋଡ଼ା ନାଚ ହୋଇଥିଲା । ଆମେ ଚଇତି ଘୋଡ଼ା ନାଚ ଦେଖୁଥିବା ବେଳେ ମୋର ପ୍ରିୟ ବଡ଼ମାମୁଁର ମୃତ୍ୟୁ ହୋଇଥିଲା ।.ତା'ର ବହୁ ବର୍ଷ ପରେ ପୁରୀ କଲେରା ହସ୍ପିଟାଲରେ ତାଙ୍କ ସ୍ତ୍ରୀ ମରିଥିଲେ । ବର୍ତ୍ତମାନ ତାଙ୍କର ଏକମାତ୍ର ପୁତ୍ର ସପରିବାର ପୁରୀରେ ରହନ୍ତି । ପୁତ୍ର ଶ୍ରୀ ହର ପ୍ରସନ୍ନ ମିଶ୍ର ହାଇସ୍କୁଲରେ ଶିକ୍ଷକତା କରନ୍ତି ।

ମଝିଆ ମାମୁଁ ସତ୍ୟବାଦୀ ମିଶ୍ର ପୁରୀ କଲେଜରୁ ବି.ଏ. ପାସ୍ କରି କିଛିଦିନ ବିଜୁପଟ୍ଟନାୟକଙ୍କ ଚଉଦୁଆର ଓ.ଟି.ଏମ. କମ୍ପାନୀରେ ଅଫିସର ହୋଇଥିଲେ । ଛାତ୍ର କଂଗ୍ରେସ ଓ ମହତାବଙ୍କ ପ୍ରଜାତନ୍ତ୍ର ସହିତ ମଧ୍ୟ ସମ୍ପୃକ୍ତ ଥିଲେ । ତା'ପରେ ରାଣୀହାଟ ହାଇସ୍କୁଲରେ ଶିକ୍ଷକତା, ଟ୍ରେଡ଼ ୟୁନିୟନର ନେତୃତ୍ୱ ଓ ଶେଷରେ ଓଡ଼ିଶା ହାଇକୋର୍ଟରେ ଓକିଲାତି । ଆଦର୍ଶବାଦୀ, ସ୍ପଷ୍ଟବାଦୀ ଓ ଅସ୍ଥିର ପ୍ରକୃତିର ହୋଇଥିବାରୁ ସେ ନିଜେ ଆର୍ଥିକ ବା ବୈଷୟିକ ସ୍ୱଚ୍ଛଳତା ହାସଲ କରିପାରିନାହାନ୍ତି । ତାଙ୍କର ପିଲାମାନେ ଚାକିରୀ କଲା ପରେ ତାଙ୍କ ପରିବାରର ଅବସ୍ଥା ହୁଏତ ଅନେକଟା ବଦଳିଛି ।

ମୁଁ ପୁରୀ କଲେଜରେ ଛାତ୍ର ଥିବା ବେଳେ ଅନେକ ଥର କଟକ ଯାଉଥିଲି ଇଣ୍ଟର କଲେଜ ଡିବେଟ୍‌ମାନଙ୍କରେ ପ୍ରତିଯୋଗିତା କରିବା ପାଇଁ । ସେତେବେଳେ ପ୍ରାୟ ରହୁଥିଲି ମଝିଆଁ ମାମୁଁଙ୍କ ଘରେ । ସେ ଥିଲେ ରାଣୀହାଟ ସ୍କୁଲର ଶିକ୍ଷକ ଓ ବଣିଆ ସାହୀରେ ଘରଭଡ଼ା ନେଇଥିଲେ । ମୋତେ ସେ ମୋ ପଢ଼ାପଢ଼ି, ବକ୍ତୃତା ଓ ଲେଖାଲେଖିରେ ଉତ୍ସାହିତ କରୁଥିଲେ ଖୁବ୍ । ସ୍କୁଲରେ ପଢ଼ିଲା ବେଳେ ମୀନାବଜାର,

ଟୁଆଁଟୁଇଁ, ସଂସାର, ଶିଶୁରାଇଜ ପତ୍ରିକାଗୁଡ଼ିକରେ ମୋର ଅନେକ କବିତା ପ୍ରକାଶିତ ହୋଇଥିଲା । ମଝିଆଁ ମାମୁଁ ସେ କବିତା ଗୁଡ଼ିକ ପଢ଼ି ଖୁସୀ ହେଉଥିଲେ ଓ ମୋଠାରୁ ଶିଶୁ କବିତା ପାଣ୍ଡୁଲିପିଟିଏ ନେଇଥିଲେ ଛପାଇବା ପାଇଁ । ସେତେବେଳେ ମୁଁ ଥିଲି ଦଶମଶ୍ରେଣୀର ଛାତ୍ର । କୌଣସି କାରଣରୁ ପାଣ୍ଡୁଲିପିଟି ଛପା ହୋଇପାରିଲା ନାହିଁ । ପଇଁତିରିଶି ବର୍ଷ ପରେ ଏବେ ମଧ୍ୟ ପାଣ୍ଡୁଲିପିଟି ପାଣ୍ଡୁଲିପି ହୋଇରହିଛି; ବହିଆକାରରେ ପ୍ରକାଶ ହୋଇପାରିନାହିଁ ।

ସାନ ମାମୁଁ ଜଗବନ୍ଧୁ ମିଶ୍ର ସମାଜର ସତ୍ୟବାଦୀ ପ୍ରେସରେ ଟାଇପ୍ ଫାଉଣ୍ଡ୍ରିରେ କାର୍ଯ୍ୟକରି ଅବସର ନେଇଛନ୍ତି । ରାଜା ବଗିଚାରେ ରହନ୍ତି । ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ । ଅନ୍ୟ ଦୁଇ ଭାଇଙ୍କ ପରି ଉତ୍ସାହୀ, ସ୍ନେହୀ ମଣିଷ ।

ଚମ୍ପକ ଦ୍ୱାଦଶୀ ପଡ଼େ ଜ୍ୟେଷ୍ଠ ମାସରେ । ବୀରବଳଭଦ୍ରପୁର ଓ ପାଖ ଆଖର ବ୍ରାହ୍ମଣ ଶାସନମାନଙ୍କରେ ଏହା ସବୁଠାରୁ ଆକର୍ଷଣୀୟ ପର୍ବ । ଗାଁଆ, ଗାଁଆ, ଏପରି କି ଗୋଟିଏ ଗାଁଆର ଖଣ୍ଡି ଖଣ୍ଡି ଭିତରେ ବାଣଫୁଟାଇବାର ପ୍ରତିଯୋଗିତା ଚାଲେ । ବାଣଫୁଟା ଦେଖିବାକୁ ଗାଁଆମାନଙ୍କୁ ଆସନ୍ତି ବନ୍ଧୁବାନ୍ଧବ ମାନେ- କିଛି କିଛି ଦିନ ଦେଖଣାହାରୀ ମଧ୍ୟ । ଠାକୁର ମାନଙ୍କୁ ଚଉଦୋଳରେ ବୁଲାଯାଏ । ଘରେ ଘରେ ପିଠପଣା ହୁଏ । ଏଇ ପର୍ବରେ ବାଣ ଫୁଟାଯାଏ ସିନା, କିନ୍ତୁ ପର୍ବଟିର ମାସେ ଦୁଇମାସ ଆଗରୁ ଆରମ୍ଭ ହୁଏ ବାଣ ପ୍ରସ୍ତୁତି । ଗାଁଆ'ର ଟୋକାମାନେ ଲାଗିପଡ଼ନ୍ତି ବାଣ ତିଆରି କରିବାରେ । ଖରାବେଳମାନଙ୍କରେ ଦୋଳବେଦୀ ଉପରେ, କାହା ଦାଣ୍ଡପିଣ୍ଡାରେ କିମ୍ୱା ପୋଖରୀ କୂଳରେ ଦେଖିବାକୁ ମିଳେ ବାଣବାଡ଼ିଆ । ଜଣେ ଗୋଟିଏ ମୁଦା ବାଉଁଶ ନଳକୁ ଗୋଟିଏ ହାତରେ ଜୋରରେ ଜାବୁଡ଼ି ଧରି ତା' ଭିତରେ ପଶି ପାରୁଥିବା କାଠଟିକୁ ଧରିଥାଏ ଆର ହାତରେ । ନଳି ଭିତରେ ଥାଏ ବାରୁଦ । ଆଉ ଜଣେ କୁରାଢ଼ୀ ଜାତୀୟ କିଛି ଗୋଟାଏ ବସ୍ତୁରେ କାଠଟିକୁ ପିଟୁଥାଏ ଅଳ୍ପ ଅଳ୍ପ ବ୍ୟବଧାନରେ । ଥରେ ପିଟି ସାରିବା ପରେ କାଠଟିକୁ ଅଳ୍ପ ଟେକିଦିଏ ପ୍ରଥମ ଜଣକ । ଏକ ନିର୍ଦ୍ଦିଷ୍ଟ ରୀତିରେ ଚାଲେ ବାଣବାଡ଼ିଆ । ବାଣବାଡ଼େଇଲାବେଳେ ଗୀତଟିଏ ଗାଉଥାଏ କେହିଜଣେ -

ଏକେ ଏକେ
ଯୋଉ ଏକେକୁ ସେଇ ଏକେ
ଏକେ ଏକେ ।
ଦୁଇ ଦୁଇ

ଯୋଉ ଦୁଇକୁ ସେଇ ଦୁଇ

ଦୁଇ ଦୁଇ ।

ଛଅଥର ବାଢ଼େଇଲେ ଧରାହୁଏ ଏକ । ଏହିପରି ବାରୁଦ ପ୍ରସ୍ତୁତ କରାଯାଏ ବାଣ ପାଇଁ । ଚମ୍ପକ ଦ୍ୱାଦଶୀ ଦିନ ବେଶୀ ଫୁଟେ ହାବେଲୀ । ଗାଁଆଟା ସାରା ବାଣଫୁଟା ଦେଖନ୍ତି । ମୁଣ୍ଡରେ ଓଦା ଗାମୁଛା ପକାଇ ସାହସୀ ଗ୍ରାମବାସୀମାନେ ହାବେଲୀରେ ନିଆଁ ଲଗାନ୍ତି । ନଡ଼ିଆଗଛମାନଙ୍କୁ ଥଟ୍ଟା କଲାପରି ବହୁ ଉଚ୍ଚକୁ ଉଠନ୍ତି ହାବେଲୀମାନେ ଓ ଶବ୍ଦଶୂନ୍ୟ ହୋଇ ଖସିପଡ଼ନ୍ତି ତଳକୁ-କାହାର ଚାଳ ଉପରେ ପଡ଼ନ୍ତି କେବେ କେବେ । ତୁରନ୍ତ ବାଲଟି ଇତ୍ୟାଦିରେ ପାଣି ନେଇ ନିଆଁ ଲିଭାଇବାରେ ଲାଗି ପଡ଼ନ୍ତି ଗ୍ରାମବାସୀ । ମୋ ନନା ଏହିପରି ଚମ୍ପକ ଦ୍ୱାଦଶୀକୁ ବାଣ ଦେଖିବାକୁ ଯାଇ କାହା ଘରେ ନିଆଁ ଲିଭାଇବାର ଦୃଶ୍ୟ ମୋର ଝାପ୍‌ସା ଝାପ୍‌ସା ମନେ ଅଛି ।

ବାଣଫୁଟା ଛଡ଼ା ଅନେକ ଆକର୍ଷଣ ଥିଲା ବୀରବଳଭଦ୍ରପୁରର । ଆମ ସହରରେ ସେ ସବୁ ମିଳନ୍ତା କୁଆଡୁ ? ନଡ଼ିଆଗଛମାନଙ୍କ ତଳେ ଅପର୍ଯ୍ୟାପ୍ତ ଗୋଟମା । ଖଡ଼ିକାରେ-ଗୋଟମା ଫୋଡ଼ି ରଥତିଆରି କରିବା ସବୁ ପିଲାଙ୍କର ପ୍ରିୟ ଖେଳ । ଗୋପୀନାଥଙ୍କ ମନ୍ଦିର ପାଖରେ ନୁଣୁକୋଳି ଗଛ । ଅତି ଛୋଟ ଛୋଟ କଳା ନାଲି ରଙ୍ଗର କୋଳି । ମଞ୍ଜି ସହିତ ଚୋବାଇ ଖାଇ ହୁଏ- ଲାଗେ ଖଟା ମିଠା । ଚୁପ୍‌ଚାପ୍ ଖରାବେଳେ ପୋଖରୀ କୂଳକୁ ଆସିଲେ ଦେଖାଯାନ୍ତି ବଡ଼ ବଡ଼ ମାଛମାନେ- କୂଳରେ ପାହାଚ ନିକଟକୁ ଆସି ପାଟି ପାକୁ ପାକୁ କରୁଥାନ୍ତି । ମଣିଷ ଛାଇ ପଡ଼ିଲେ ଛପିଯାନ୍ତି ଗଭୀର ପାଣିରେ ।

ମୁଁ ବୀରଭଦ୍ରପୁର ଯାଉଥିଲି ୧୯୫୦-୫୫ ମଧ୍ୟରେ । ମୋର ଜନ୍ମ ୧୯୪୨ରେ ହୋଇଥିବାରୁ ଭାରତର ସ୍ୱାଧୀନତା ଆନ୍ଦୋଳନ ଓ ସ୍ୱାଧୀନତା ଲାଭ ମୋ ଅନୁଭୂତିର ବାହାରେ । କିନ୍ତୁ ୧୯୫୦-୫୫ରେ ମଧ୍ୟ ମୁଁ କିଛି ପରିମାଣରେ ଅନୁଭବ କରିପାରିଥିଲି ସ୍ୱାଧୀନତା ଆନ୍ଦୋଳନ ସମୟର ଉତ୍ତେଜନା, ଉତ୍ସାହ ଓ ଆଦର୍ଶ ।

ମୋର ଦୁଇଜଣ ଦଦେଇ ପୁଅ ଭାଇ ବୟସରେ ମୋ'ଠାରୁ ବଡ଼ ଥିଲେ । ସେମାନେ ବୀର ଭଦ୍ରପୁର ଗ୍ରାମରେ ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାର ଏକଭାଗ ଲାଭ କରିଥିଲେ । ଗ୍ରାମରେ ସେମାନଙ୍କର ଅନେକ ସାଙ୍ଗ ଥିଲେ । ସେମାନଙ୍କ ମୁହଁରୁ ଶୁଣିବାକୁ ମିଳୁଥିଲା ସ୍ୱାଧିନତା ଆନ୍ଦୋଳନ ସମୟର ଦେଶପ୍ରେମମୂଳକ ସଂଗୀତ ।

ଜଣାଗଲା ତୁମ୍ଭ କଥା

ଇଁରେଜ ବାଲା

ବେଳ ଥାଉ ଥାଉ ବାନ୍ଧ

ତୁମ୍ଭ ପେଡ଼ି ପୁଟୁଳା ।

ଦେଠେଇ ଘରେ ତ୍ରିରଙ୍ଗା ପତକାଟିଏ ଥିଲା ଓ କେବେ କିପରି ତାହା ଖୋସା ହେଉଥିଲା ଚାଳଉପରେ । ଘରର ମାଟି କାନ୍ଥରେ ଟଙ୍ଗା ହୋଇଥିଲା ଗାନ୍ଧିଜୀଙ୍କ ଚିତ୍ରଟିଏ । ଗୋପବନ୍ଧୁଙ୍କର ବି । ଗ୍ରାମର ଟୋକାମାନେ କୌଣସି ଗୋଟିଏ ବିଶେଷ ଦିନରେ- ବୋଧହୁଏ ଗୋପବନ୍ଧୁଙ୍କ ଜନ୍ମ ଦିନରେ- ଗୋପବନ୍ଧୁଙ୍କ 'ବନ୍ଦୀର ସ୍ୱଦେଶ ଚିନ୍ତା' ଆବୃତ୍ତି କରୁଥିଲେ-

ମିଶୁ ମୋର ଦେହ

ଏ ଦେଶ ମାଟିରେ

ଦେଶବାସୀ ଚାଲି

ଯାଆନ୍ତୁ ପିଠିରେ ।

ଦେଶର ସ୍ୱରାଜ୍ୟ

ପଥେ ଯେତେ ଗାଡ଼

ପୂରୁ ତହିଁ ପଡ଼ି ମୋର ମାଂସ ହାଡ଼ ।

ସେହି ଗାଁଆର ରାମ କକେଇ- ରାମଚନ୍ଦ୍ର ମିଶ୍ର- ଦେଠେଇ ଘରକୁ ଲାଗିଛି ତାଙ୍କ ଘର । ଟିକିଏ କୁଜା, ବଡ଼ ପାଟିରେ କହିଲେ ଶୁଣି ପାରନ୍ତି । ଦିନେ ରେଳରେ ମୁଁ ଦେଠେଇ ହେରିକାଙ୍କ ସଙ୍ଗେ ବୀରବଳଭଦ୍ରପୁର ଗଲାବେଳେ କିପରି କେଜାଣି ସେ ବି ପହଞ୍ଚିଗଲେ ଆମ କମ୍ପାର୍ଟମେଣ୍ଟରେ । ବାହାରେ ଶୀତଳ ପବନ, ଧାନବିଲ, ଆକାଶ । ସେ ବଡ଼ ପାଟିରେ ଆରମ୍ଭ କଲେ ଗୀତ-

ଏଇ ଆମରି ଗାଁ

ଏଇ ଆମରି ଗାଁ

ସୁଜଳା ସୁଫଳା

ଶସ୍ୟଶ୍ୟାମଳା ସ୍ୱର୍ଣ୍ଣପ୍ରସୂ ମା' ।

ଏଇ ଆମରି ଗାଁ ।

ଏଇ ଗାଁଆରେ

ନିତି ସଞ୍ଜେ ଗଙ୍ଗଶିଉଳି ଫୁଟେ,

ଆମ୍ରବୀଥି କୁଞ୍ଜେ କୁଞ୍ଜେ

କୋଇଲି ଗାଇ ଉଠେ ।

ନାରିକେଳର ପତ୍ରେ ପତ୍ରେ

ପରଶିଯାଏ ବାଆ ।

ଏଇ ଆମରି ଗାଁ....

ଗୀତଟି ମୋତେ ଏତେ ଭଲ ଲାଗିଲା ଯେ ମୁଁ ଅନେକ ଦିନ ଯାଏଁ ତାକୁ ମନେ ମନେ ଦୋହରାଇ ଥିଲି । ସହରରେ ବଢ଼ି ମଧ୍ୟ ଗାଁଆ ମାନଙ୍କ ପ୍ରତି ମୋର ଗୋଟାଏ ପ୍ରଚଣ୍ଡ ମୋହ, ପ୍ରଚଣ୍ଡ ଆକର୍ଷଣ ରହିଯାଇଛି ମନରେ । ବିଶେଷତଃ ଶ୍ରୀପୁରୁଷୋତ୍ତମପୁରରେ ଯେଉଁଠି ମୁଁ ଜନ୍ମ ହୋଇଥିଲି ଓ ମୋ ବୋଉ ମରିଥିଲା- ସେଇଠାରେ ରହିବା ପାଇଁ ଗୋଟାଏ ଭାବପ୍ରବଣତାମୋ ମନରେ ସୃଷ୍ଟି ହୁଏ ବେଳେ ବେଳେ । ଯୁକ୍ତିବାଦୀ ମନ ସେ ଭାବପ୍ରବଣତାକୁ ଗ୍ରହଣ କରେ ନାହିଁ ଅବଶ୍ୟ । ଶ୍ରୀପୁରୁଷୋତ୍ତମପୁର ଓ ବୀରବଳଭଦ୍ରପୁରର ସ୍ମୃତିସବୁ ଏହି ଭାବପ୍ରବଣତା ପାଇଁ ଦାୟୀ ନିଶ୍ଚୟ ।



# ପାଗିନାନୀ ଗଲା କୁଆଡ଼େ

ମତେ ଛ' କି ସାତ ବର୍ଷ ହୋଇଥିଲା ବେଳେ ପାଗିନାନୀ କଥା ମାନୁଥିଲି ଖୁବ୍ । ବୟସରେ ସେ ଥିଲା ମୋ ଠାରୁ ବର୍ଷେ କି ଦୁଇବର୍ଷ ବଡ଼; ପଢୁଥିଲା ପୁରୀ ଦୟିତାପଡ଼ା ସାହୀ ଉଚ୍ଚ ପ୍ରାଥମିକ ସ୍କୁଲରେ- ବୋଧହୁଏ ମୋ ଉପର ଶ୍ରେଣୀରେ । ମୋ ସାଙ୍ଗେ ପଢୁଥିବା ଅନ୍ୟପିଲାମାନେ ବି ପାଗିନାନୀ କଥାରେ ଆତଯାତ ହେଉଥିଲେ । ଯେମିତି-ଗିନୁ, ଦେବନ, ଆର୍ତ୍ତ ବା କୃଷ୍ଣ । ପାଗିନାନୀର ସାନଭାଇ ବାବୁ ବି ପଢୁଥିଲା ମୋ ସାଙ୍ଗରେ ।

ଆମ ଘରଠାରୁ ତିନିଚାରି ଘର ଛାଡ଼ି ରହୁଥିଲେ ପାଗିନାନୀ, ତା' ନନା-ବୋଉ, ଭାଇନା ଓ ବାବୁ । ତାଙ୍କ ଘରକୁ ଲାଗି ଅର୍ଦ୍ଧପଦ୍ମାଙ୍କ ମନ୍ଦିର; ଘର ସାମ୍ନାରେ ଅପର୍ଣ୍ଣାନାନୀ (ନାରୀକବି ଅପର୍ଣ୍ଣା ଦେବୀ)ଙ୍କ ଘର । ଯେଉଁ ଘରେ ପାଗିନାନୀ ରହୁଥିଲା, ସେଇଟା ଯେ ତାଙ୍କ ନିଜ ଘର ନ ଥିଲା- ସେମାନେ ସାକ୍ଷୀଗୋପାଳ ନିକଟସ୍ଥ କୌଣସି ଶାସନରୁ ଆସି ସେ ଘରେ ଭଡ଼ା ରହୁଥିଲେ - ସେତକ ଅବଶ୍ୟ ଆମେ ସେତେବେଳେ ଜାଣି ନଥିଲୁ । ଆମ ସାହୀର ପ୍ରାୟ ସମସ୍ତେ ପୁରୁଷ ପୁରୁଷ ଧରି ରହିଆସୁଥିଲେ ନିଜ ନିଜ ଘରେ- ସାହୀ ଭିତରେ ଭଡ଼ାରେ ରହିବାଟା ପ୍ରାୟ ନ ଥଲା ।

ସେ ଯାହାହେଉ, ପାଗିନାନୀ ଥିଲା ଆମ ପିଲାମାନଙ୍କ ନେତା । ନୂଆ ନୂଆ ଖେଳ ବିଷୟରେ ସେ ଆମକୁ ଯୋଜନାମାନ ଦେଉଥିଲା ।

'ଚାଲ ଏଥର ଦିଅଁ ବସାଇବା'-ପାଗିନାନୀ ଏତକ କହନ୍ତେ ଆମେମାନେ ଲାଗିପଡୁଥିଲୁ ଦିଅଁ ବସାଇବାରେ । ପାଗିନାନୀ ଘର ଭିତରେ ବଡ଼ମଣିଷମାନଙ୍କ ସଚରାଚର ଦୃଷ୍ଟି ପଡୁ ନଥିବା କୌଣସି ଅନ୍ଧାରୁଆ କୋଣରେ କେତୋଟି ଇଟା ବା ଡାବଲ ପକାଇ ତା' ଉପରେ ଘୋଡ଼ାଇ ଦିଆଯାଉଥିଲା କନାଟିଏ-କନାଟି ଉପରେ ପଥର ଖଣ୍ଡିଏ । ପଥରରେ ଯଥାରୀତି ଚୂନ, ସିନ୍ଦୁର ଓ ଫୁଲ ଲଗାଇଦେଲା ପରେ

ତାହା ପ୍ରତିଭାତ ହେଉଥିଲା ଆମ ଘରମାନଙ୍କରେ ଖଟୁଲୀ ଉପରେ ପୂଜା ପାଉଥିବା ଦିଅଁପରି । ପଥର ଖଣ୍ଡିକ ବର୍ତ୍ତମାନ ମନେ ହେଉଥିଲା ଜୀବନ୍ତ-ବଡ଼ ବଡ଼ ଆଖିରେ ଆମର ଅଭିଭାବକ ପରି ସେ ଯେପରି ଲକ୍ଷ୍ୟ କରୁଥିଲା ଆମର ଗତିବିଧି ।

ଏପରି କି ପାଗିନାନୀ କେଉଁଠୁ ଥାଳିଆରେ ଖଇ ଟିକିଏ ବା ଚୁଡ଼ା ଗଣ୍ଡିଏ ଆଣି ଭୋଗ କରୁଥିଲା ଦିଅଁଙ୍କୁ । ମନକୁ 'ଓଁ ସ୍ୱାହା' ଇତ୍ୟାଦି କହୁଥିଲା ଓ ଭୋଗକୁ ପାଣି ଛଡ଼ାଉଥିଲା । ତା'ପରେ ଅତି ଗମ୍ଭୀର ଭଙ୍ଗୀରେ ଆମ ସମସ୍ତଙ୍କୁ ଧରାଇ ଦେଉଥିଲା ଟିକିଏ ଟିକିଏ ଭୋଗ । ଆମେ ପରମ ଆନନ୍ଦରେ ସେ ଭୋଗରେ ପାଟିମିଠା କରି ମୁଣ୍ଡରେ ହାତ ବୋଳୁଥିଲୁ ।

ଆମ ବ୍ରାହ୍ମଣ ପରିବାରମାନଙ୍କରେ ଦିଅଁ ଦେବତାମାନଙ୍କ ପ୍ରତି ଯେପରି ଧ୍ୟାନ ଦିଆଯାଉଥିଲା, ପରିବାରର ସଦସ୍ୟମାନଙ୍କ ପାଇଁ ହୁଏତ ସେତିକି ଦୃଷ୍ଟି ଦିଆଯାଉ ନଥିଲା । ଘରେ ଘରେ ଦିଅଁ ପୂଜା -ଠାକୁରବାସନ ଧୁଆ, ଫୁଲ ତୋଳା, ମୁରବୀମାନେ ସକାଳୁ ଗାଧୋଇ ମଠା ବା ଗାମୁଛା ପିନ୍ଧି ମୁଣ୍ଡରେ ଚନ୍ଦନ ଇତ୍ୟାଦି ବୋଳି ବେଶ୍ କିଛି ସମୟ ନାନାଦି ମନ୍ତ୍ର ବୋଲିବା- ଘରେ ଏପଟସେପଟ ହେବା-ପ୍ରତିଟି ସକାଳର ଥିଲା ଏକ ଗୁରୁତ୍ୱପୂର୍ଣ୍ଣ ଅଂଶ । ପାଗିନାନୀ ତା' ନନାଙ୍କଠାରୁ ଏଇ ଦିଅଁପୂଜା ଖେଳଟି ଶିଖିନେଇଥବାରେ ଅସ୍ୱାଭାବିକତା କିଛି ନ ଥିଲା ।

ହଠାତ୍ ଦିନେ ଆମକୁ ଫୁସଫୁସ ହୋଇ କହେ ପାଗିନାନୀ-''ଦିଅଁଙ୍କର ଆଖି ଫିଟିଗଲାଣି ।''

ହଠାତ୍ ଗୋଟାଏ ପ୍ରଚଣ୍ଡ ଗୁରୁତର ଭାବ ଆମକୁ ମାଡ଼ିବସେ । ଆଖି ଫିଟିଗଲାଣି ଦିଅଁଙ୍କର-ସେ ଜୀବନ ପାଇଗଲେଣି ଯେତେବେଳେ, ଆଉ ତାଙ୍କୁ ଘରେ ରଖି ନ ହୁଏ । ଦୁଇତିନିଟା ଘଣ୍ଟ ଆମେ ଯୋଗାଡ଼ କରିଆଣୁ କେଉଁଠୁ । ରଥଯାତ୍ରା ସମୟରେ ରଥ ଉପରେ ଘଣ୍ଟ ପିଟୁଥିବା କେତେଜଣ ଘଣ୍ଟୁଆଙ୍କ ଘର ମଧ୍ୟ ଆମ ସାହୀରେ । ଘଣ୍ଟ ପିଟି ପିଟି ଆମେ ଦିଅଁଙ୍କୁ ପକାଇ ଦେଉ ଅର୍କ୍ଷପଦ୍ମା ସାମ୍ନା ଗଭୀର କୂଅରେ-ଶେଷ ହୁଏ ଦିଅଁଙ୍କର ବିସର୍ଜନ । ପାଗିନାନୀ ପୁଣି ଆମକୁ ଧରାଇ ଦିଏ ଟିକିଏ ଟିକିଏ ଭୋଗ ।

ପାଗିନାନୀ ମନରେ ସବୁବେଳେ ନୂଆ ନୂଆ ଭାବନା, ନୂଆ ନୂଆ ଯୋଜନା । ''ତୁ ନନାଙ୍କଠୁ ଯୋଉ ପଇସା ଆଣୁଛୁ, ମତେ ଦେଲେ ମୁଁ ସେଇ ପଇସା ରଖି ରଖି ତୋ ପାଇଁ ନୂଆ ଜାମା କିଣିଦେବି ।''-ଅତି ବିଶ୍ୱାସରେ ଦିନେ ଚୁପଚାପ ମୋତେ କହିଲାସେ । ''କିନ୍ତୁ କାହାକୁ କହିବୁନି ଏ କଥା ।''

ତାହା ହିଁ ହେଲା । ଯେତେବେଳେ ନନାଙ୍କଠୁ ଯାହା ପଇସା ପାଇଲି-ଦୁଇପଇସି, ଅଣି, ଦୋଅଣି-କାହାକୁ ନ କହି ଅତି ଉତ୍ସାହରେ ଧରାଇ ଦେଲି ପାଗିନାନୀକୁ । ଚାଲିଲା ଏମିତି କିଛି ଦିନ ।

ଦିନ ଯେମିତି ଗଡ଼ିଚାଲିଲା, ମୋର ନୂଆ ଜାମା ପିନ୍ଧିବା ସେମିତି ନିକଟେଇ ଆସିଲା । ନୂଆ ଜାମା-ତା'ର ଗୋଟାଏ ନୂଆ ବାସ୍ନା । କେବଳ କୁଆଁର ପୁନିଅଁ ଦିନ ନୂଆ ଜାମା ପିନ୍ଧିବାର ସୁଯୋଗ ଜୁଟେ । ଆଇ ଆସି ପହଞ୍ଚିଯାଏ । ନୂଆ ଜାମା ପହଞ୍ଚିଲେ ଆନ୍ଦ ଉଲ୍ଲାସରେ ସମଗ୍ର ପୃଥିବୀଟା ବିଶେ ଅଲଗା । ଖାଲି ରାତି ପାହିଲେ ଗାଧୋଇ ପାଧୋଇ ନୂଆ ଜାମାରେ ହଳଦୀ ଲଗାଇ ପିନ୍ଧିବା କଥା । ବର୍ଷକରେ ତ ଏମିତି ଦିନ ଆସେ ଗୋଟିଏ । ଯାହା ହେଉ ପାଗିନନା ଆଣିଦେବ ନୂଆଜାମାଟିଏ । ସାଙ୍ଗ ପିଲାମାନେ ଏଥିରେ ଆଶ୍ଚର୍ଯ୍ୟ ହେବେ ନିଶ୍ଚୟ । ପାଗିନାନୀ ଓ ମୋ ଭିତରେ ଏଇ ଗୋପନ ବୁଝାମଣା ଜାଣି ନଥାନ୍ତି କେହି । ମୁଁ ଯାହା ପଇସା ଦେଉଥାଏ, ସେ ଲୁଚାଇ ରଖୁଥାଏ କୌଣସି ଅତି ନିଭୃତ ସ୍ଥାନରେ ।

ଆସନ୍ନ ସୌଭାଗ୍ୟରେ ଅତ୍ୟଧିକ ଉଲ୍ଲସିତ ହେବା ବୁଦ୍ଧିମାନର କାର୍ଯ୍ୟ ନୂହେଁ । ମୋ କାର୍ଯ୍ୟକଳାପରେ ତାହା ହିଁ ପ୍ରମାଣିତ କରିଦେଲି ମୁଁ ।

ବୋଉ ମରିବା ପରେ ମୋ ଢେଙ୍କେନାନୀ ବହୁ ସମୟରେ ଆମ ଘରକୁ ଆସି ମୋ ଭଲଭନ୍ଦ ବୁଝୁଥିଲା । ପାଗିନାନୀ କେମିତି ନିକଟ ଭବିଷ୍ୟତରେ ମୋ ପାଇଁ ନୂଆ ଜାମାଟିଏ କିଣି ଦେବାକୁ ଯାଉଛି-ଏଇ ଶୁଭ ସମ୍ବାଦଟା ଦିନେ କହିଦେଲି ଆନନ୍ଦ ଆତିଶଯ୍ୟରେ ।

ତା'ପରେ ଯାହା ଘଟିଲା ତାହା ଯେପରି ଦ୍ରୁତ, ସେହିପରି ନାଟକୀୟ । ଢେଙ୍କେନାନୀ ମୋ ହାତ ଟାଣି ଟାଣି ସେଇ ମୁହୂର୍ତ୍ତରେ ପହଞ୍ଚିଗଲା ପାଗିନାନୀ ଘରେ । ସେ ରାଗିଯାଇଥାଏ ଖୁବ୍ । ପାଗିନାନୀ ବୋଉକୁ ଦେଖି ରାଗଟା କୌଣସି ମତେ ସମ୍ଭାଳି ନେଇ ତରତର ହୋଇ କ'ଣସବୁ କହିପକାଇଲା । ଯାହା କହୁଥିଲା ଢେଙ୍କେନାନୀ, ସେଥିରୁ ବୁଝି ହେଉଥିଲା-ପାଗିଟା ମତେ ଶିଖେଇ ମୋ ପଇସା ସବୁ ନେଇଯାଉଛି ।

ଆଶ୍ଚର୍ଯ୍ୟ ଯେ ପାଗିନାନୀ ବୋଉ ବି ସମ୍ପୂର୍ଣ୍ଣ ସମର୍ଥନ କଲେ ମୋ ଢେଙ୍କେନାନୀକୁ । ''ପାଗିଟା ନିହାତି ଦୁଷ୍ଟ ଓ ଅଣ୍ଡିରାଚଣ୍ଡି''- ଏହିପରି କିଛି କହିଲେ ସେ ଖୁବ୍ ଜୋରଦେଇ ।

ତା'ପରେ ମୋ ପାଗିନାନୀ ଦୟନୀୟ ଅବସ୍ଥାରେ ମୋ ସାମନାକୁ ଯେପରି

ଟଣାହୋଇ ଆସିଲା, ତାହା ଦେଖି ମୁଁ ପ୍ରାୟ କାନ୍ଦ କାନ୍ଦ ।

''ଯାହା ପଇସା ଆଣିଛୁ ଫେରା କହୁଛି''- ପାଗିନାନୀ ବୋଉଙ୍କ ଦୁର୍ଲ୍ଲଂଘ୍ୟ ଆଦେଶ । ତାକୁ ଅମାନ୍ୟ କରିବ କିଏ ?

କୌଣସି ଅନ୍ଧାରୁଆ ଠଣା ଭିତରୁ ପାଗିନାନୀ ବର୍ତ୍ତମାନ ଉଦ୍ଧାର କଲା କିଛି ଅଣି ଓ ଦୋ' ପଇସି । ଢେଙ୍କେନାନୀ ତାହା ତୁରନ୍ତ କାନିରେ ବାନ୍ଧି ମୋତେ ପ୍ରଶ୍ନ କଲା, ''ଏତିକି ପଇସା ଦେଇଥିଲୁ ନା ବେଶୀ ?''

''ଏତିକି'' । -ମୁଁ କହିଲି ।

ପାଗିନାନୀ ଭୟରେ ପ୍ରାୟ ଥରୁଥାଏ । ମୁଁ କେତେ ପଇସା ଦେଇଥିଲି ଓ ସେଥିରୁ କେତେ ପଇସା ମୁଆଁ କି କମଳାଲେମ୍ବୁ ମିଠେଇ ହୋଇ ପାଗିନାନୀ ପାଟି ଭିତରେ ହଜିଛନ୍ତି, ମୁଁ କି ପାଗିନାନୀ କେହି କହିପାରି ନଥାନ୍ତୁ । ଯୋଗକୁ ପାଗିନାନୀର ନନା ଘରେନଥିଲେ । ସେ ଥିଲେ କ'ଣ ହୋଇଥାନ୍ତା ତା'ର ଅବସ୍ଥା ? ତା ନନା ଯୋଉ ରାଗୀ ଲୋକ, ସେ ଦିନ ଖୁବ୍ ଗୁଡ଼ାଏ ମାଡ଼ ଖାଇଥାନ୍ତା ସେ ।

ଏଇ ଘଟଣାର କିଛି ଦିନ ପରେ ବୋଧହୁଏ ପାଗିନାନୀର ନନା ବୋଉ ଆମ ସାହୀ ଛାଡ଼ି କୁଆଡ଼େ ଚାଲିଗଲେ । ପାଗିନାନୀ ସହିତ ମୋ ସମ୍ପର୍କ ଆପାତତଃ ଛିନ୍ନ ହେଲା ସବୁଦିନ ପାଇଁ ।

ଥରେ କିନ୍ତୁ ପୁରୀରୁ ଭୁବନେଶ୍ୱର ଆସିଲା ବେଳେ ଦେଖାହେଲା ପାଗିନାନୀର ସାନଭାଇ ବାବୁ ସହିତ । ସେ ମୋତେ ତ ପ୍ରଥମେ ଚିହ୍ନି ପାରିଲା ନାହିଁ । ପ୍ରାୟ ତିରିଶି ବର୍ଷ ବିତି ଯାଇଥିଲା ଯା ଭିତରେ । ସେ ଟିକିଏ ସଙ୍କୁଚିତ ଅନୁଭବ କଲାପରି ମନେହେଲା ।

''ଭାଇନା'' ? ପଚାରିଲି ।

''ଭାଇନା କଣ୍ଟ୍ରାକ୍‌ଟରୀ କରୁଥିଲେ । ଟ୍ରକରେ ଯାଉଥିବା ବେଳେ ଆକ୍‌ସିଡେଣ୍ଟରେ ମରିଗଲେ ।''

(କିଛି ସମୟ ନୀରବତା ।)

''ତୁ କଣ କରୁଛୁ ?''

''କ୍ଲର୍କ ଅଛି ଏସ୍.ଆଇ. ଅଫିସିରେ ।''

''ପାଗିନାନୀ ?''

''ପାଗିନାନୀ ବହୁତ ଦୁଃଖରେ ଅଛି ରେ-'' କହିଲା ବାବୁ ।

ଅଳ୍ପ ସମୟ କଥାବାର୍ତ୍ତା ପରେ ଆମେ ପରସ୍ପରର ନିକଟତର ହୋଇ ଆସିଲୁ । ପିଲାଦିନର ସମ୍ପର୍କ ପୁଣି ଚେଇଁ ଉଠୁଥିଲା ଆମ ଭିତରେ ।

''ପାଗିନାନୀର ଗୁଡ଼ିଏ ପିଲା । ଅତି ଗରିବ ଘରେ ବାହା ହୋଇଥିଲା । ଦୁଃଖ କଷ୍ଟରେ ମଫସଲ ଗାଁଆ'ରେ ପଡ଼ିଛି ।''

ମୁଁ ଆଉ କିଛି ଜାଣିବାକୁ ଚାହିଁଲି ନାହିଁ । ଜାଣିଲେ ମୁଁ କିଛି କରିପାରିବି ନାହିଁ ପାଗିନାନୀ ପାଇଁ ।

ଦୁଷ୍ଟ, ଅଣ୍ଡିରାଚଣ୍ଡି ପାଗିନାନୀଟାକୁ ତା'ନନା-ବୋଉ ହୁଏତ ଯଥାଶୀଘ୍ର ବିଭା କରିଦେଇଥିବେ ପନ୍ଦର କି ଷୋଳ ବର୍ଷ ବୟସରେ । ତା'ପରେ ଦୁଃଖ ଜଞ୍ଜାଳ, ସନ୍ତାନ-ସନ୍ତତି । ଏହିପରି ତ ହୁଏ- ମୁଁ ନିଜକୁ ବୁଝାଇଲି ।

ଏହିପରି ହୁଏ ଆମ ସମାଜରେ- ମୁଁ ନିଜକୁ ସାନ୍ତ୍ୱନା ଦେଲି । ଯେତେ ପ୍ରାଣ ପ୍ରାଚୁର୍ଯ୍ୟ, ଯେତେ ପ୍ରତିଭାର ଅଧିକାରଣୀ ହୋଇଥାଉ ପଛେ, ଝିଅଟିଏ ହୋଇ ଜନ୍ମ ହୋଇଛି ଯିଏ, ତା'ର ଗୋଡ଼ ହାତ ବାନ୍ଧି ତାକୁ ପକାଇଦିଅ ଅନ୍ଧାର ଗାତରେ । ସେ କାନ୍ଦୁଥିଲେ ତା କାନ୍ଦ ଶୁଣନାହିଁ । ନିଜକୁ ବୁଝାଇ ଦିଅ, ଝିଅଗୁଡ଼ା ତ କାନ୍ଦନ୍ତି ସେମିତି । ସତୀପ୍ରଥା ବିରୁଦ୍ଧରେ ଅନର୍ଗଳ ଭାଷଣ ଦିଅ, ବିବୃତି ଦିଅ ଖବରକାଗଜରେ, ମହିଳା କମିଶନ୍ ଇତ୍ୟାଦି ଗଢ଼ି ନିଜ ନାମ ଓ ଫଟୋଗ୍ରାଫ୍ ଇତ୍ୟାଦି ପ୍ରଚାରିତ କରୁଥାଅ- ଆଶା ରଖିଯାଅ, ଆସନ୍ତା ନିର୍ବାଚନରେ କାଳେ ମିଳିଯିବ ଟିକେଟଟିଏ-ମନ୍ତ୍ରୀପଦ ମଧ୍ୟ । ସ୍ୱର୍ଗକୁ ଯିବାକୁ ହେଲେ ନିଶୁଣୀଟାଏ ଲୋଡ଼ା ଯେ !

ମୋ ପାଗିନାନୀ ଆଜି ସେମିତି କାନ୍ଦୁଥାଉ କେଉଁ ମଫସଲ ଗାଁଆରେ- ଝିଅ ଗୁଡ଼ା ତ ସେମିତି କାନ୍ଦନ୍ତି ! ସେ କାନ୍ଦ ଆମେ ଶୁଣିବା କାହିଁକି ?



# ଗୋବିନ୍ଦ ସାର୍

ପୁରୀ ଦୟିତାପଡ଼ା ସାହି ଉଚ୍ଚ ପ୍ରାଥମିକ ସ୍କୁଲରେ ମୁଁ ପଢ଼ିଥିଲି ଛଅ ବର୍ଷ । ସେତେବେଳେ ମୋର ପ୍ରିୟ ଶିକ୍ଷକ ଥିଲେ ଗୋବିନ୍ଦ ସାର୍-ପୁରୀ ନିକଟସ୍ଥ ରାଉତରାପୁର ଗ୍ରାମର ଗୋବିନ୍ଦ ମିଶ୍ରେ । କଳା, ଗେଡ଼ା, ଅତି ଧୀରସ୍ଥିର ମଣିଷ । ଗୋଟିଏ ଗୋଡ଼ ଗୋଦର । ଧୋତି, ଅଧା କମିଜ ପିନ୍ଧି ହାତରେ ଛତାଟିଏ ଧରି ଗୋଟିଏ ଗୋଟିଏ ଚାଲି ସେ ଆସନ୍ତି ଆମ ସ୍କୁଲକୁ-ରାଉତରାପୁରରୁ ଛଅ କି ସାତ କିଲୋମିଟର ବାଟ ।

ସେ ଥିଲେ ତୃତୀୟଶ୍ରେଣୀ ଶିକ୍ଷକ । ଅଙ୍କ ଓ ସାହିତ୍ୟ ପଢ଼ାଉଥିଲେ, ଶ୍ରେଣୀରେ ସେ ଅନେକ ସମୟରେ କମିଜଖଣ୍ଡ କାଢ଼ିଦେଇ କାନ୍ଥରେ କେଉଁ କଣ୍ଟାରେ ଲଟକାଇ ଦିଅନ୍ତି । ହାତରେ ବେତଟିଏ ଧରି ଧୀରେ ଧୀରେ ପଢ଼ାନ୍ତି ପାଠସବୁ । ପିଲାମାନେ ଗପ କଲେ ବେତକୁ ପିଟିଦିଅନ୍ତି ଟେବୁଲ ଉପରେ ଓ ଗାଳି ଦିଅନ୍ତି ଇଂରାଜୀରେ-ନନ୍‌ସେନ୍‌ସ, ରାସକେଲ, ଇଡିୟଟ୍ ଭେରି ବ୍ୟାଡ଼ ଗାର୍ଲସ ।

'ଗାର୍ଲସ' ଶବ୍ଦଟିରେ କାହିଁକି ତାଙ୍କ ଗାଳି ଅଟକୁଥିଲା ମୁଁ ଜାଣେ ନାହିଁ ।

ଆମ ସ୍କୁଲର ସେ ହିଁ ଥିଲେ ସବୁଠାରୁ ଅଧିକ ଶିକ୍ଷିତ ବ୍ୟକ୍ତି । ଦଶମ ଶ୍ରେଣୀ ଯାଏଁ ପଢ଼ିଥିଲେ । ଚମତ୍କାର ଅକ୍ଷର-ଓଡ଼ିଆରେ, ଇଁରାଜୀରେ ସ୍କୁଲ ପରେ ସେ ଗାଁଆକୁ ନ ଫେରି ଯାଆନ୍ତି ଦୟିତାପଡ଼ା ସାହୀର ନୂଆ ମଠକୁ । (ଆମ ସ୍କୁଲଟିର ନାଁ ଦୟିତାପଡ଼ା ସାହି ସ୍କୁଲ କିନ୍ତୁ ସ୍କୁଲଟିର ଅବସ୍ଥିତି ପଥୁରିଆ ସାହୀରେ ।) ସେଠାରେ ଗାଧୁଆ ପାଧୁଆ ସାରି ସଞ୍ଜରେ କରନ୍ତି ଟିଉସନ । ଦିନେ ଦିନେ ଟିଉସନ ପରେ ସହରରେ କାହା ବାହା ନିମନ୍ତ୍ରଣ ପଙ୍ଗତରେ ଯୋଗଦିଅନ୍ତି । ଗାଁଆରେ ପହଞ୍ଚିଲା ବେଳକୁ ରାତି ଦଶଟା କି ଏଗାରଟା ।

ସ୍କୁଲ ପରେ ମୁଁ ବି ଯାଉଥାଏ ତାଙ୍କ ପାଖକୁ ଟିଉସନ ପାଇଁ । ମୋ ନନାଙ୍କ ସଙ୍ଗେ ଗୋବିନ୍ଦ ସାରଙ୍କର ଭଲ ବନ୍ଧୁତା ଥାଏ । ମାସକୁ ଦରମା ଦୁଇଟଙ୍କା । ନନା ତ

ଚାକିରି କରି ନଥିଲେ ଯେ, ପହିଲାରେ ଦରମା ପାଆନ୍ତେ । ଦୈନିକ ଆୟରେ ଦିନଟି ଚଳେ । ମୁଁ ତେଣୁ ପ୍ରତିଦିନ ଗୋବିନ୍ଦସାରଙ୍କୁ କିଛି କିଛି ପଇସା ଦେଉଥିଲି । ଏପରି କରିବାଟା ଅଦ୍ଭୁତ ମନେ ହେଉଛି ବର୍ତ୍ତମାନ । କିନ୍ତୁ ଏପରି ଗୁରୁ ଦକ୍ଷିଣା ପ୍ରଦାନ ଅସ୍ୱାଭାବିକ ନ ଥିଲା ସେତେବେଳେ । ପଇସା ଥିଲା ଆମ ପାଇଁ ଅତି ଦୁର୍ଲଭ ବସ୍ତୁ । ତେଣୁ ସାମାନ୍ୟ ଆୟରେ ଚଳି ଯିବାର କଳାଟି ହାସଲ କରିବାକୁ ହେଉଥିଲା । ତେବେ ମୋ'ଠାରୁ ବି ଗରିବ ପିଲା ପଢୁଥିଲେ ଗୋବିନ୍ଦ ସାରଙ୍କ ଟିଉସନରେ । ବଇଁଶୀ ମାଗଣାରେ ପଢୁଥିଲା କିମ୍ବା ମାସ ଶେଷରେ ଦେଉଥିଲା ଆଠଣା ବା ସେହିପରି କିଛି । ସେ ରହୁଥିଲା ନରେନ୍ଦ୍ର କୋଣରେ ଅନାଥ ଆଶ୍ରମରେ । ପ୍ରାଥମିକ ଶିକ୍ଷା ପରେ ତା'ର ଖବର ମୁଁ ରଖିନାହିଁ । ଅନାଥ ଆଶ୍ରମର ଗୋଟିଏ ପିଲାକୁ ବହୁବର୍ଷପରେ ମୁଁ ଭେଟିଲି । ନାମ ହରିହର ମିଶ୍ର । ପୁରୀରେ କାହା ଘରେ ରୋଷେଇ କାମ କରେ । ମୋତେ ଚିହ୍ନି ବହୁତ ଖୁସିରେ କହିଲା, 'ତୋ ଘରେ ମୋତେ ରୋଷେୟା କରି ରଖ' । ମୁଁ ରାଜି ହେଲି ନାହିଁ । ଜଣେ ସାଙ୍ଗକୁ ଘରେ ରୋଷେୟା କରି ରଖିବା ସୁବିଧାଜନକ ନୁହେଁ । ଏବେ ବି ମୋତେ ସେ 'ତୁ' ସମ୍ବୋଧନ କରେ । ସେଥିରେ ମୁଁ ଆନନ୍ଦିତ । ପ୍ରାଥମିକ ସ୍କୁଲରେ ଆମେ ଦୁହେଁ ସମାନ ମାର୍କ୍ସ ରଖୁଥିଲୁ ।

ମୋ ପ୍ରିୟ ଶିକ୍ଷକ ଗୋବିନ୍ଦ ସାର ବହୁ ସମୟରେ ଉଚ୍ଚାରଣ କରୁଥିଲେ ଦୁଇଟି ନାମ-ଗଙ୍ଗୁ ଓ ଗଦୁ । ତାଙ୍କର ଦୁଇ ପୁଅ । ଗଙ୍ଗୁ ଅର୍ଥାତ ଗଙ୍ଗାଧର ମିଶ୍ର ସେ ସମୟରେ ପୁରୀ କଲେଜରେ ବି.ଏ. ପଢୁଥିଲେ ବୋଧହୁଏ । ବି.ଏ. ପରେ ଏମ.ଏ. ପଢ଼ି ଅଧ୍ୟାପକ ହେଲେ ।

ଦ୍ୱିତୀୟ ପୁତ୍ର ଗଦୁ ଅର୍ଥାତ ଗଦାଧର ମିଶ୍ର ପଢୁଥିଲେ ପୁରୀ ଜିଲା ସ୍କୁଲରେ । କଳା, ଈଷତ୍ ମୋଟା, ଖଦଡ଼ ଧୋତି ଓ ହାଫ ସାର୍ଟ ପରିହିତ ମଫସଲି ଚାଲି ଚଳଣ । ମୁଁ ପଢୁଥିଲି ତାଙ୍କଠାରୁ ତିନି ଚାରିକ୍ଲାସ ତଳେ । ଛାତ୍ର ସମାଜରେ ଗଦାଧର ଅର୍ଥାତ୍ ଗଦୁ ଭାଇନା ଥିଲେ ଅନ୍ୟତମ ଆଦର୍ଶ ।

ସ୍କୁଲରେ ପଢ଼ା ଆରମ୍ଭ ହେବା ଆଗରୁ ସମବେତ ଛାତ୍ରଛାତ୍ରୀ ଯେଉଁ ପ୍ରାର୍ଥନା ଆବୃତ୍ତି କରନ୍ତି-ସେଥିରେ ନେତୃତ୍ୱ ନେଉଥିଲେ ଗଦୁଭାଇନା । ପ୍ରଥମେ ସେ ପଦଟିମାନ ଆବୃତ୍ତି କଲେ ଅନ୍ୟମାନେ ତାହା ଦୋହରାଉ ଥିଲେ ।

''ଇହାସନେ ଶୁଷ୍ୟତୁ ମେ ଶରୀରମ୍ ।
ତ୍ୱଗସ୍ଥିମାଂସମ୍ ବିଳୟମ୍ ଯ ଯାତୁ ।।

ଅପ୍ରାପ୍ୟବୋଧିନ୍ ବହୁ କଳ୍ପ ଦୁର୍ଲ୍ଲଭାମ୍ ।
ନହୀ ଆସନାତ୍ ଗାତ୍ର ମିଦଂ ଚଳିଷ୍ୟତି ।।''

ସଂସ୍କୃତ ଉଚ୍ଚାରଣ ପରେ ଓଡ଼ିଆ ଅନୁବାଦ:

''ଏ ଆସନେ ଦେହ ମୋର
ହେଉପଛେ କ୍ଷୀଣ ।
ଅସ୍ଥି ଚର୍ମ ମାଂସ ଯେତେ
ହେଉ ପଛେ ଲୀନ ।।
ଯେତେଦିନ ନ ଲଭିଛି
ଶୁଦ୍ଧ ତତ୍ତ୍ୱ ଜ୍ଞାନ ।
ତେତେଦିନ ଏ ଶରୀର
ନ ଛାଡୁ ଆସନ ।।''

ପୁଣି ସଂସ୍କୃତ:

''ସର୍ବେ ଭବନ୍ତୁ ସୁଖୀନଃ ।
ସର୍ବେ ସ୍ୟନ୍ତୁ ନିରାମୟାଃ ।।
ସର୍ବେ ଭଦ୍ରାଣୀ ପଶ୍ୟନ୍ତୁ ।
ମା କଶ୍ଚିତ୍ ଦୁଃଖ ଭାଗ୍ ଭବେତ ।।

ଓଡ଼ିଆ :

''ସବୁରି ମଙ୍ଗଳ କରେଁ କାମନା ।
ନ ଭୋଗନ୍ତୁ କେହି ରୋଗ ଯାତନା ।।
ପରସ୍ପର ହିତ ଦେଖନ୍ତୁ ସର୍ବେ ।
ଦୁଃଖ ଭାଗୀ କେହି ନ ରହୁ ଭବେ ।।''

ସଂସ୍କୃତ ଶ୍ଳୋକଗୁଡ଼ିକର ଓଡ଼ିଆ ଅନୁବାଦ ବୋଧହୁଏ କବି ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ଦ୍ୱାରା ହୋଇଥିଲା । ମୁଁ ପୁରୀ ଜିଲ୍ଲା ସ୍କୁଲରେ ଛାତ୍ର ଥିବା ସମୟରେ କିଛିବର୍ଷ ସେ ଥିଲେ ପ୍ରଧାନ ଶିକ୍ଷକ । ଗଦୁଭାଇନାଙ୍କ ପରେ ସ୍କୁଲରେ ପ୍ରାର୍ଥନା ବୋଲାଇବାର ଦାୟିତ୍ୱ ପଡ଼ିଲା ମୋ ଉପରେ । ପ୍ରାୟ ଚାରିଶହ ଛାତ୍ରଛାତ୍ରୀ ଲାଇନ

କରି ଠିଆହୋଇ ଥାନ୍ତି ର ବଙ୍ଗଳା ଶିକ୍ଷୟିତ୍ରୀ ଶଚିଦି 'ଗୋନେଶ' ସମ୍ବୋଧନ କଲେ ମୁଁ ପ୍ରାର୍ଥନା ଆରମ୍ଭ କରେ । ସପ୍ତମରୁ ଦଶମ ଚାରିବର୍ଷ ମୁଁ ପ୍ରାର୍ଥନା ପରିଚାଳନା କରିଥିଲି ସ୍କୁଲରେ । ମୋ ପକ୍ଷରେ ଏହା ଥିଲା ଏକ ସମ୍ମାନ । ମୁଁ ଗଦୁଭାଇନାଙ୍କ ପଦାଙ୍କ ଅନୁସରଣ କରୁଥିଲି ।

ଗଦୁଭାଇନା ପ୍ରଥମ ଶ୍ରେଣୀରେ ମାଟ୍ରିକ ପାଶ କରି ବୋଧହୁଏ ଚାକିରିଟିଏ କଲେ କୌଣସି ଅଫିସରେ । ତାଙ୍କର ବିବାହ ମଧ୍ୟ ହେଲା । ପରେ ଶୁଣିଲି, ସେକିନ୍ତୁ ଅସୁସ୍ଥ ହୋଇଗଲେ ଓ ଚାକିରିଟି ହରାଇଲେ ।

ଥରେ ସେ ଆସିଥଲେ ଆମ ଘରକୁ । ଗୋବିନ୍ଦ ସାର୍‌ଙ୍କ ଦେହ ମାସେ ଖଣ୍ଡେ ହେଲା ଖରାପ ଥାଏ । ଟିଉସନ ଆସୁ ନ ଥାନ୍ତି । ରାତି ଆଠଟାକି ନଅଟା ବେଳକୁ ଆମଘରକୁ ଆସିଲେ ଗଦୁ ଭାଇନା । ଟିଉସନରେ ପଢୁଥିବା ପିଲା ମାନଙ୍କଠାରୁ ଦରମା ସଂଗ୍ରହ କରି ନେଉଥିଲେ । ଆମ ଘରେ ଅଳ୍ପ କିଛି ରେଜା ପଇସା ଥିଲା । ଡିବି ଆଲୁଅରେ ଗଣି ସେ ପଇସା ନେଲେ । ସେ ଠିଆ ହୋଇଥାନ୍ତି ପିଣ୍ଡା ତଳକୁ । ପିଣ୍ଡା ଉପରେ ନନା ଓ ମୁଁ । ଦୁଇ ତିନିଜଣ ଦେଖଣାହାରୀ ।

ପ୍ରାଥମିକ ସ୍କୁଲ ଛାଡ଼ି ହାଇସ୍କୁଲ ଗଲାପରେ ବି ଗୋବିନ୍ଦ ସାର୍‌ଙ୍କ ଟିଉସନ ଭୁଲି ନ ଥିଲି ମୁଁ । କେବେ ନୂଆମଠରେ କେବେ ମଧ୍ଯ ଦଇତାଙ୍କ ଦାଣ୍ଡଘରେ ଲଣ୍ଠନ ଆଲୁଅରେ ବସି ଆମେ ପଢୁଥିଲୁ । ଟିଣ ସ୍କୁଲ ଘରର କୋଳାହଳ ଓ ଝାଳୁଆ ଝାଳୁଆ ବାତାବରଣଠାରୁ ଭଲ ଥିଲା ଏମିତି ସଞ୍ଜମାନଙ୍କରେ ଅଳ୍ପ କେତେ ଜଣ ସାଙ୍ଗ ସାଥୀଙ୍କ ମେଳରେ ପାଠ ପଢ଼ିବା । ସ୍କୁଲ ସରିବା ପରେ ଘରେ କ'ଣ ଖାଇ ମୁଁ ଓ ମୋର ଅନ୍ୟାନ୍ୟ ବନ୍ଧୁମାନେ ପହଞ୍ଚି ଯାଉଥିଲୁ ଟିଉସନ ହେବା ସ୍ଥଳରେ । ନାନାପ୍ରକାର ଖେଳ ଜମୁ ଥିଲା । ବେଳେବେଳେ ଗୋବିନ୍ଦ ସାର ବିଶ୍ରାମ ନେଉଥିବା ମଠରେ ପହଞ୍ଚି ମଠବାଡ଼ିରେ ଗଛମାନଙ୍କରେ ଚଢ଼ି ଆମେ ଖେଳୁଥିଲୁ । ଗୋବିନ୍ଦ ସାର୍ ସେହି ବାଡ଼ିରେ ଗାଧୁଆପାଧୁଆ କରୁଥିଲେ; ବାବାଜୀମାନଙ୍କ ସାଙ୍ଗେ ସୁଖ ଦୁଃଖ ହେଉଥିଲେ ଓ ଆମ ଖେଳ ଉପରେ ନଜର ରଖୁଥିଲେ ।

ଅଙ୍କ ଓ ସାହିତ୍ୟ ଉପରେ ଗୋବିନ୍ଦ ସାରଙ୍କ ଦକ୍ଷତା ବିଷୟରେ ଆମର ଏତେ ଭରସା ଥିଲା ଯେ, ପ୍ରାଥମିକ ସ୍କୁଲ ସରିବା ପରେ ମଧ୍ୟ କେହି କେହି ତାଙ୍କ ପାଖକୁ ଆସି ଅଙ୍କ ପଚାରି ବୁଝୁଥିଲେ । ଦୁର୍ଗାପ୍ରସନ୍ନ ଦାସ ବା ଟୁନିଆ ଭାଇ ହାଇସ୍କୁଲକୁ ଯିବା ପରେ ବି ମଝିରେ ମଝିରେ ପଢ଼ିବା ପାଇଁ ଗୋବିନ୍ଦ ସାରଙ୍କ ଟିଉସନକୁ ଆସୁଥିଲେ । ଏଥିରେ ଗୋବିନ୍ଦ ସାର ସମ୍ମାନିତ ଅନୁଭବ କରୁଥିଲେ ନିଶ୍ଚୟ । ଟୁନିଆ ଭାଈ ପରେ

ମାଟ୍ରିକ ପରୀକ୍ଷାରେ ପ୍ରଥମ ଦଶଜଣଙ୍କ ଭିତରେ ରହିଲେ ଓ ଇଞ୍ଜିନିୟର ହେଲେ । ବୋକାରୋରେ ଇଞ୍ଜିନିୟର ଥିଲାବେଳେ ଅକାଳରେ ତାଙ୍କର ପରଲୋକ ହୋଇଯାଇଛି ।

ଗୋବିନ୍ଦ ସାର ପ୍ରଥମିକ ସ୍କୁଲରୁ ଅବସର ନେବା ପରେ ବହୁବର୍ଷ ଜୀବିତ ଥିଲେ । ପୁରୀ କଲେଜରୁ ବି.ଏ.ପାଶ କରି ରେଭେନ୍‌ସା କଲେଜରେ ନାମ ଲେଖାଇବା ପାଇଁ କଟକ ଆସିବା ଆଗରୁ ମୁଁ ମୋର ଜଣେ ବନ୍ଧୁ ବିଜୟ କାନୁନ୍‌ଗୋଙ୍କ ସହିତ ଯାଇଥିଲି ରାଉତରାପୁର-ଗୋବିନ୍ଦ ସାରଙ୍କୁ ସାକ୍ଷାତ କରିବା ପାଇଁ । ସେ ଆଗରୁ ଯେପରି ଥିଲେ ସେହିପରି ଦିଶୁଥିଲେ । ମୋତେ ମାଟି ପିଣ୍ଡାରେ ମଣିଣା ପକାଇ ବସାଇଲେ ଓ ଭୋ-ଭୋ କାନ୍ଦିଲେ । ଏତେଦିନ ପରେ ମଧ୍ୟ ମୁଁ ଯେ ତାଙ୍କୁ ମନେ ରଖିଛି, ସେହି ଆନନ୍ଦ ଓ ଆବେଗରେ ତାଙ୍କର ଏପରି କାନ୍ଦ ।

ମୋତେ ଗାଁଆ ମୁଣ୍ଡରେ କେଉଁଠୁ ଆଣି ପଇଡ଼ ପିଆଇଲେ । ଗୋବିନ୍ଦ ସାରଙ୍କ ସହିତ ଏହା ପରେ ଆଉ ଦେଖା ହୋଇ ନ ଥିଲା । ତାଙ୍କର ପରଲୋକ ହେବାର କେତେ ମାସ ପରେ ସେ ସମ୍ବାଦ ମୁଁ ପାଇଲି ।



# ବେତର ଦୁର୍ଦ୍ଦଶା

ଦୟିତାପଡ଼ା ସାହୀ ଉଚ୍ଚପ୍ରାଥମିକ ସ୍କୁଲରେ ବହୁ ବର୍ଷ ହେଡ଼ ପଣ୍ଡିତ ଥିଲେ ଫକୀର ମହାପାତ୍ରେ । ସୌମ୍ୟଦର୍ଶନ; ଉଜ୍ଜ୍ୱଳ ଗୋରା ଚେହେରା । ମୁଣ୍ଡଟା ଚିକ୍ ଚିକ୍ ଚନ୍ଦା, ଗହଳ କଳାଦାଢ଼ି । ଫକୀର ସାରଙ୍କୁ ପିଲାମାନେ ନାମ ଦେଇଥିଲେ ଦାଢ଼ିଆ-କାରଣ ଦାଢ଼ି ଥିଲା ତାଙ୍କ ଚେହେରାର ବିଶେଷତ୍ୱ । ତାଙ୍କ ପ୍ରତି ପିଲାମାନଙ୍କ ଯେପରି ଭୟ ଥିଲା, ଅନ୍ୟ କୌଣସି ସାରଙ୍କ ପ୍ରତି ସେପରି ନ ଥିଲା । ସେ ଥିଲେ ପଞ୍ଚମ ଶ୍ରେଣୀର ଶିକ୍ଷକ । ପଞ୍ଚମ ଶ୍ରେଣୀରେ ମଧ୍ୟ ହେଉଥିଲା ତାଙ୍କର ଅଫିସ । ଅର୍ଥାତ୍ ଗୋଟାଏ ଦୁଇଟା କାଠ ଆଲମାରୀରେ ସ୍କୁଲର ରେଜିଷ୍ଟର, କାଗଜପତ୍ର ଇତ୍ୟାଦି ସେହି ବଖରାରେ ରଖାଯାଉଥିଲା । ଗୋଟିକରେ ଲେଖାଥିଲା-

ଧର୍ମ ସିନା ଏକା ମହତ ପଣିଆ,<br>
ଆଉ ସବୁ କଥା ଅଢ଼େଇ ଦିନିଆ ।

ଆଉ ଗୋଟିକରେ

ବୈକୁଣ୍ଠ ସମାନ ଆହା ଅଟେ ସେହିଘର,<br>
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।

ପଞ୍ଚମ ଶ୍ରେଣୀରେ ପଢୁଥିଲା ବେଳେ ମୁଁ ମଧ୍ୟ ସେହିପରି ନୀତିବାଣୀ କାଗଜପଟାଟିଏ ପ୍ରସ୍ତୁତ କରିଥିଲି ସ୍କୁଲ ପାଇଁ । ଏପରି କରିବା ପାଇଁ ଆମ ଭିତରେ ପ୍ରତିଯୋଗିତା ଚାଲୁଥିଲା ।

ଫକୀରସାରଙ୍କ ପାଖରେ ଅହରହ ରହୁଥିଲା ମୋଟା କଷରା ରଙ୍ଗର ବେତଟିଏ ।

ସେହି ବେତଟିର ମହିମା ସମସ୍ତ ଛାତ୍ର ସମାଜକୁ ସନ୍ତ୍ରସ୍ତ କରି ରଖୁଥିଲା ।

ସ୍କୁଲ ପରିସରରେ ଫକୀର ସାର୍ ଥିଲେ ଜଣେ ଏକଛତ୍ର ବାଦୀ ସମ୍ରାଟ ଓ ତାଙ୍କ ରାଜ ଶକ୍ତିର ପ୍ରତୀକ ଥିଲା ସେହି ଆଦିମ ବେତଟା । ସେହି ବେତର ସ୍ପର୍ଶରେ ନିଜକୁ ଧନ୍ୟ ମନେ କରି ନ ଥିବା ଛାତ୍ରଟିଏ ପାଇବା ବୋଧହୁଏ ସହଜ ନ ଥିଲା ଆମ ସ୍କୁଲରେ ।

ସ୍କୁଲଘର ମରାମତି ହେବ ବୋଲି ଥରେ ଶଗଡ଼େ ବାଲି ଆସି ଜମା ହୋଇଥାଏ ସ୍କୁଲ ହତାରେ । ମୁଁ ଓ ମୋର କେତେ ଜଣ ସାଙ୍ଗ ସଂଗରେ ଅତି ଉଲ୍ଲାସରେ ସେହି ବାଲିକୁଦ ଉପରେ ଡିଆଁଡେଇଁ କରି ବାଲିଗୁଡ଼ାକ ଏଣେତେଣେ ଖେଳେଇ ପକାଇଲୁ । ବିପଦଟ ପଡ଼ିଲା ତା' ପରଦିନ ।

ମୁଁ ଚତୁର୍ଥ ଶ୍ରେଣୀରେ ପଢୁଥିଲି । ମୋତେ ହେଡ୍ ପଣ୍ଡିତଙ୍କ ଡକରା ଆସିଲା । ତୁ ବାଲିରେ ଡେଉଁଥିଲୁ ? ଘୋର କ୍ରୋଧରେ ମୋତେ ପ୍ରଶ୍ନ କଲେ ସେ । ହାତରେ ସେହି ଭୟଙ୍କର ବେତଟା ।

ତେବେ ମୁଁ ଏକା ନ ଥିଲି । ଅନ୍ୟାନ୍ୟ ଅପରାଧୀଗଣ ମୁଣ୍ଡପୋତି ଧାଡ଼ି ବାନ୍ଧି ଠିଆହୋଇଥିଲେ ବେତଦଣ୍ଡ ପାଇଁ ।

ପ୍ରତ୍ୟେକଙ୍କୁ ବେତରେ ଆଠ ବା ଦଶ ପାହାରେ । ଦୁଇ ପାପୁଲି ତାଙ୍କ ଆଗକୁ ମୁଁ ବଢ଼ାଇଦେଲି ଅତି ସାହସ ଓ ଦୃଢ଼ତାର ସହିତ । ପାହାର ପରେ ପାହାର । ପାପୁଲି ଫୁଲି ଅଳତା ପରି ନାଲି ଦିଶୁଥାଏ । ଅନ୍ୟମାନଙ୍କ ଅବସ୍ଥା ବି ସେହିପରି । କେହି କେହି ସୁକ୍‌ସୁକ୍ ବା ଭୋ ଭୋ କାନ୍ଦୁଥାନ୍ତି ।

ପ୍ରତି ପିଲାଙ୍କୁ ବେତମାଡ଼ ଦେଲାବେଳେ ଫକୀର ସାର ଦୋହରାଉ ଥାନ୍ତି । ଗୀତଟିଏ:-

ମଲ୍ଲୀଫୁଲ ଲୋ,
ଯୁଇ ଫୁଲ ଲୋ
ଡେଇଁ ପଡ଼ ବାଲିକି,
ସବୁ ଚୂଡ଼ା
ବାଲିଆଗୁଡ଼
ରଖିଥିବି କାଲିକି ।

ଏପରି ଗୀତ ସେ ଫାନ୍ଦି ଦିଅନ୍ତି ମନରୁ । ପିଲାମାନଙ୍କୁ ବିଭିନ୍ନ ଭାବରେ ଛିଗୁଲାଇ ଅପମାନିତ କରି ଓ ବେତରେ ପିଟି ସେ ସ୍କୁଲରେ ଶୃଙ୍ଖଳା ରକ୍ଷା କରୁଥିଲେ । ସ୍କୁଲ ବାରଣ୍ଡାରେ ସେ ଚାଲିଗଲେ ଛାତ୍ରଛାତ୍ରୀମାନେ ନୀରବ ଓ ଶଙ୍କିତ ହୋଇ ଯାଉଥିଲେ ।

କୌଣସି ସ୍କୁଲ ପରୀକ୍ଷାରେ ମୋର ଦୁଇଜଣ ସହପାଠୀ-ସହପାଠିନୀ ଅଙ୍କରେ ଆଣ୍ଡୁ ରଖିଥିଲେ । ଦଇବଯୋଗେ ସହପାଠିନୀଟି ସହପାଠୀର ମାଉସୀ । ପରୀକ୍ଷାଫଳ ବାହାରିବା ଦିନ ସବୁପିଲା ଜମା ହୋଇଥାନ୍ତି ସ୍କୁଲ ହତାରେ । ଫକୀର ସାର ଫଳ ଘୋଷଣା କରି କମ ମାର୍କସ୍ ରଖିଥିବା ପିଲାମାନଙ୍କ ପାଇଁ ଦଣ୍ଡବିଧାନ କରୁଥାନ୍ତି । ବର୍ତ୍ତମାନ ପଡ଼ିଲା ମୋର ସହପାଠୀ ଓ ସହପାଠିନୀଙ୍କ ପାଳି ।

ଫକୀର ସାରଙ୍କ ଦାଢ଼ିବନ୍ତ ମୁଖମଣ୍ଡଳରୁ ଆଦେଶ ବାହାରିଲା–

'ତୁମେ ମାଉସୀ-ପୁତ୍ରା ମୁଣ୍ଡ ଉପରେ ବୋଝଟିଏ ଧରିବା ପରି ହାତ ରଖି ବୁଲି ବୁଲି ଡାକ- ଆଳୁ ନବ ଆଳୁ ।'

ସେମାନେ ସମବେତ ଛାତ୍ରଛାତ୍ରୀଙ୍କ ସମ୍ମୁଖରେ ମୁଣ୍ଡରେ ଆଳୁ ବୋଝ ବୋହିବାର ଅଭିନୟ କରି ଥରକୁ ଥର ଡାକିଲେ-'ଆଳୁ ନବ ଆଳୁ' ।

ଏପରି ହେଲେ କିନ୍ତୁ ପିଲାମାନେ ହସୁ ନଥିଲେ । ଯେ ହସି ପକାଇବ, ତା ଉପରେ ଫକୀର ସାରଙ୍କ କୋପ ଦୃଷ୍ଟି ପଡ଼ିବାର ଭୟ । ତଥାପି ହସକୁ ସମ୍ଭାଳି ନପାରି କେହି କେହି ବିପଦ ମୁହଁକୁ ଟାଣି ହୋଇଯାଉଥିଲେ ।

ମୁଡ୍ ଭଲ ଥିଲେ ଫକୀର ସାର ପଞ୍ଚମ ଶ୍ରେଣୀର ଝିଅମାନଙ୍କ ସଙ୍ଗେ ତାସ୍ ଖେଳୁଥିଲେ । ସେ ବସିଥାନ୍ତି କାଠ ଚୌକୀ ଉପରେ । ତଳେ ଚାରି ପାଞ୍ଚୋଟି ଝିଅ । ମନଯୋଗ ସହକାରେ ଖେଳୁଥାନ୍ତି ଫକୀର ସାରେ, ହସ ହସ ଦିଶୁଥାନ୍ତି; ଧୀରେ ଧୀରେ ହଲୁଥାଏ ଗୋଟିଏ ଗୋଡ଼ । ଏପରି ମୁହୂର୍ତ୍ତମାନଙ୍କରେ ସୁଦ୍ଧା ତାଙ୍କୁ ଦୂରରୁ ଦେଖିଲେ ଆମକୁ ଭୟ ଲାଗେ । ତାଙ୍କ ନିକଟରେ ସାପ ଜିଭ ପରି ଲହ ଲହ ସେହି ବେତଟା । ଘାଲେଇ ହୋଇ ପଡ଼ିଥାଏ । କେତେବେଳେ ସେଇଟା ଚେଇଁ ଉଠିବ, କିଏ ଜାଣେ ?

ଶେଷରେ କିନ୍ତୁ ସେହି ପ୍ରବଳ ପ୍ରତାପୀ ବେତଟା ଏପରି ଦୁର୍ଦ୍ଦଶା ହେବ ବୋଲି କେହି କଳ୍ପନା କରି ନ ଥିଲେ । ଦିନେ ହଠାତ୍ ସେ ବେତଟା ଅନ୍ତର୍ଦ୍ଧାନ ହୋଇଗଲା ଫକୀର ସାରଙ୍କ ରୁମ୍‌ରୁ । ପ୍ରଳୟକାଣ୍ଡ ! କେହି ଜଣେ ଖବର ଦେଲା, ବେତଟା ପଡ଼ିଛି ସ୍କୁଲ ପାଖ କୂଅ ଭିତରେ । ସ୍କୁଲ ପାଖ କୂଅ ଭିତରେ । ସ୍କୁଲ ପାଖ କୂଅଟା ପ୍ରାୟ ଅବ୍ୟବହୃତ ରହୁଥିବାରୁ ତାର ପାଣି ଅପରିଷ୍କାର ଓ ସେଥିରେ ମଇଳା ସବୁ ଭାସୁଥିଲା । ଆମରି ସାହି ଠାକୁରାଣୀ ଅଲପଦ୍ମାଙ୍କ ମନ୍ଦିର ଚଟାଣ ଧୋଇବା ପାଇଁ କେବେ କେବେ ସେଥିରୁ ପାଣି କଢ଼ାଯାଉଥିଲା । ବେଶ୍ ଗଭୀର କୂଅଟା । ଥରେ ନୁହେଁ, କେତେଥର ସନ୍ତର୍ପଣରେ କୂଅ ଭିତରକୁ ଅନାଇ ଦେଖିଲି ଫକୀର ସାରଙ୍କ ବେତ ଭାସୁଛି ସେହି

ମଇଳା କୂଅ ପାଣିରେ । ମନରେ ଭୟ ଆସିଲା, ଆନନ୍ଦ ବି ପିଲାମାନଙ୍କ ମନରେ ବେଶ୍ କିଛିଦିନ ଆଲୋଚନା ଚାଲିଲା ବେତଟିର ଦୁର୍ଦ୍ଦଶା ସମ୍ପର୍କରେ ।

ଫକୀର ସାର୍ ମୋତେ କେବେ ପାଠ ପଢ଼ାଇ ନଥିଲେ । ମୁଁ ପଞ୍ଚମ ଶ୍ରେଣୀ ଆସିବା ବେଳକୁ ତାଙ୍କର ବଦଳି ହୋଇଗଲାଣି ଆଉ କେଉଁ ସ୍କୁଲକୁ । କେବଳ ପଞ୍ଚମ ଶ୍ରେଣୀ ନେଉଥିଲେ ଫକୀର ସାର୍ ।

ଫକୀର ସାରଙ୍କ ଘର ସୁଆର ସାହୀ । ସ୍ତ୍ରୀ ଓ ଦୁଇଟି ଝିଅ । ଆପାତତଃ ଝିଅ ଦୁଇଟିଙ୍କର ସେ ଖୁବ୍ ଯତ୍ନ ନେଉଥିଲେ । ପ୍ରଥମ ଝିଅ ବିବାହ କରିଥିଲେ ଜଣେ ଇଞ୍ଜିନିୟରଙ୍କୁ । ପୁରୀ ଆସୁଥିବା ସମୟରେ ବସରେ ହଠାତ୍ ହୃଦଯନ୍ତ୍ର କ୍ରିୟା ବନ୍ଦ ହୋଇ ତାଙ୍କର ମୃତ୍ୟୁ ଘଟିଥିଲା । ସାନଝିଅ କୁନି ଥିଲା ମୋ ସହପାଠିନୀ । ସେ ଥିଲା ସୁନ୍ଦରୀ ଓ ପ୍ରତିଭାମୟୀ । ସେ ଭଲ ପଢୁଥିଲା; କବିତା ଲେଖୁଥିଲା ଓ ଚମତ୍କାର ଭାଷଣ ଦେଉଥିଲା । ଦୟିତାପଡ଼ା ସାହୀ ଉଚ୍ଚ ପ୍ରାଥମିକ ସ୍କୁଲ ପରେ ସେ ପଢ଼ିଲା ପୁରୀ ବାଳିକା ହାଇସ୍କୁଲରେ । ଜାତିସଂଘ ଦିବସରେ ଭାଷଣ ପ୍ରତିଯୋଗିତାରେ ଆମେ ଦୁହେଁ ଭାଗ ନେଇ ପୁରସ୍କୃତ ହୋଇଥିଲୁ । ସେ ତାଙ୍କ ସ୍କୁଲରୁ ପ୍ରତିନିଧିତ୍ୱ କରିଥିଲା । ମୁଁ ପୁରୀ ଜିଲ୍ଲା ସ୍କୁଲର । ପୁରୀ କଲେଜରେ ମଧ୍ୟ ଆମେ ଦୁହେଁ ସାଥି ହୋଇ ପଢ଼ିଥିଲୁ । କୌଣସି ଟେଷ୍ଟ ପରୀକ୍ଷାରେ ଓଡ଼ିଆରେ ସେ ସର୍ବୋଚ୍ଚ ମାର୍କସ୍ ରଖିଥିଲା । ପରୀକ୍ଷକ ଥିଲେ ରାଜକିଶୋର ରାୟ ।

ବଡ଼ଭଉଣୀଙ୍କ ପରି କୁନିର ମଧ୍ୟ ଅକାଳରେ ପରଲୋକ ହୋଇଯାଇଛି ରାଜନୀତି ବିଜ୍ଞାନରେ ଏମ.ଏ. ପାସ କରି ଜଣେ ପ୍ରଶାସନିକ ଅଫିସରଙ୍କୁ ବିଭା କରିଥିଲା । ଅସ୍ୱାଭାବିକ ପରିସ୍ଥିତିରେ ତାର ମୃତ୍ୟୁ ଖବର କାଗଜରେ ପଢ଼ିଥିଲି ।

ପୁରୀ କଲେଜରେ ପଢୁଥିବା ସମୟରେ କୌଣସି ଅଧ୍ୟାପକଙ୍କ ସହିତ କୁନିର ସମ୍ପର୍କକୁ ନେଇ ପ୍ରବଳ ସ୍କାଣ୍ଡାଲ ହୋଇଥିଲା । ସେତେବେଳକୁ ଫକୀର ସାର ଅବସର ନେଇ ସାରିଥାନ୍ତି । ଦିନେ ମରୀଚି କୋଟ ଗଳିରେ ତାଙ୍କ ସହିତ ମୁହାଁମୁହିଁ ହୋଇଗଲା ।

'ନମସ୍କାର ସାର ।'

'କେମିତି ଅଛ, ବାବା ?'

'ଭଲ'

'ଆନନ୍ଦ, ଆନନ୍ଦ ।'

ସେହି ଉଜ୍ଜ୍ୱଳ ଚେହେରା, ଖଦଡ଼ ଧୋତି ଓ ହାଫ କମିଜ୍ । ହାତରେ ଖଦଡ଼

[illegible]ଯୋଜିବ । କୁନି ସମ୍ପର୍କରେ ଚିନ୍ତିତ ଥିବେ ବୋଲି ମୁଁ ଅନୁମାନ କଲି । [illegible] ସେ [illegible]ଲା 'କୁନି ତ ତୁମ ଭଉଣୀ । ତୁମ ସାଙ୍ଗେ ପଢ଼ୁଛି' ।

ବର୍ତ୍ତମାନ ଫକୀର ସାରଙ୍କ ଅନ୍ୟ ଏକ ରୂପ ଯେପରି ପ୍ରତିଭାତ ହେଲା ମୋ ସମ୍ମୁଖରେ । ସ୍ନେହଶୀଳ, ଆମାୟିକ, ଅଥଚ ଅଭିଭାବକସୁଲଭ କଠୋର । ଶହ ଶହ ପିଲାଙ୍କୁ ମଣିଷ କରିବା ପାଇଁ ସେ ହୁଏତ ଧରିଥିଲେ ସାପ ପରି ଲହ ଲହ ସେହି ବେତଟା । ମାତ୍ର କିନ୍ତୁ ତାଙ୍କର ତିଆରି ହୋଇଥିଲା ସ୍ନେହ ଓ ବାତ୍ସଲ୍ୟରେ । ନିଜ ଝିଅ ସମ୍ପର୍କରେ ସ୍କାଣ୍ଡାଲ ହୁଏତ ସେ ଶୁଣିଥିଲେ ଓ ତାହା ତାଙ୍କୁ କେତେ ଆଘାତ ଦେଇଥିବ ସତେ । ସେ ଧୀରେ ଧୀରେ ଚାଲି ଯାଉଥିଲେ ଲବଣିଖିଆ ଛକ ଆଡ଼େ; ମୁଁ ବାଟ ମୋଡ଼ିଲି ପଥୁରିଆ ସାହି ଯିବା ପାଇଁ ।

୨

# ଶିକ୍ଷକ ପରି ଶିକ୍ଷକ

ମୋର ପଞ୍ଚମ ଶ୍ରେଣୀ ହେଲା ବେଳକୁ ଫକୀର ସାର୍ ବଦଳି ହୋଇଗଲେ କେଉଁ ସ୍କୁଲକୁ । ତାଙ୍କ ସ୍ଥାନରେ ଆମ ସ୍କୁଲରେ ହେଡ୍‌ପଣ୍ଡିତ ହୋଇ ଆସିଲେ ଜଗନ୍ନାଥ ନାୟକ । ଆଗରୁ ସେ ଥିଲେ ହରଚଣ୍ଡିସାହି ଉଚ୍ଚ ପ୍ରାଥମିକ ସ୍କୁଲରେ । ଜଗନ୍ନାଥ ନାୟକ ଅନେକାଂଶରେ ଥିଲେ ଫକୀର ସାରଙ୍କଠାରୁ ଭିନ୍ନ । କଳା ସୁଗଠିତ ଚେହେରା; ଦୁମ୍ ଦୁମ୍ ଚାଲି; କଲରେ ମୋଟା ପାନ ଖିଲ । କଥା କହିବା ଆଗରୁ ପାନ ଛେପ ପକାନ୍ତି ପିଣ୍ଡା ତଳକୁ । ସେ ଆମ ସ୍କୁଲରେ ଯୋଗଦେବା ପରେ ସ୍କୁଲର ବାତାବରଣ ହାଲୁକା ଲାଗିଲା ।

ଜଗନ୍ନାଥ ନାୟକଙ୍କ ସାଙ୍ଗରେ ହରଚଣ୍ଡିସାହି ସ୍କୁଲରୁ ଯୋଡ଼ିଏ ପିଲା ଆସି ଆମ ସ୍କୁଲରେ ନାମ ଲେଖାଇଲେ । ଗଙ୍ଗା ଓ ନିମାଇଁ । ଜଗନ୍ନାଥ ସାର୍ କହିଲେ, 'ମୁଁ ଯେଉଁ ସ୍କୁଲକୁ ଯିବି, ଏ ପିଲା ଦିଓଟା ମୋ ସାଙ୍ଗେ ସେ ସ୍କୁଲକୁ ଯିବେ' । ଗଙ୍ଗା ଓ ନିମାଇଁ ଥିଲେ ଜଗନ୍ନାଥ ସାରଙ୍କ ଏକାନ୍ତ ଶରଣାଗତ ।

ଗଙ୍ଗା ଗୋରା, ପତଳା ଓ ତୁରୁତୁରିଆ; ନିମାଇଁ କଳା, ମୋଟାମୋଟି ଧୀରସ୍ଥିର । ଆମ ଶ୍ରେଣୀରେ ଅନ୍ୟ ସାହିରୁ ଆସି ଯୋଗ ଦେଇଥିବାରୁ ଆମେ ସ୍ୱାଭାବିକ ଭାବେ ଆଗ୍ରହୀ ହେଲୁ ପିଲା ଦୁଇଟିଙ୍କ ପ୍ରତି । ସୁଷମ ଖାଦ୍ୟ ଓ ସ୍ୱାସ୍ଥ୍ୟର ଉପଯୁକ୍ତ ଯତ୍ନରୁ ବଞ୍ଚିତ ହୋଇ ଆମେ ପିଲାମାନେ ସାଧାରଣତଃ ଥିଲୁ ଦୁର୍ବଳ ଓ ପତଳା । ଆମ ଭିତରେ ମୋଟାମୋଟି ନିମାଇଁ ସହଜରେ ଆକର୍ଷଣ କଲା ଆମର ଦୃଷ୍ଟି । ଆମ ଭିତରେ ମୋଟାମୋଟି ପିଲାଟିର ଉପସ୍ଥିତି ଆମକୁ ଏତେ ଅସ୍ୱାଭାବିକ ଲାଗୁଥିଲା ଯେ ଆମେ ତାକୁ ଦେଖିଲେ ହସ ସମ୍ଭରଣ କରିପାରୁ ନଥିଲୁ । ଏପରିକି ତାକୁ ଚିଡ଼େଇବାର ବିଭିନ୍ନ କୌଶଳ ମଧ୍ୟ ଆମେ ଚିନ୍ତା କଲୁ । ନିମ୍ନଲିଖିତ କୌଶଳଟି ବୋଧହୁଏ ମୋର ଦୁଷ୍ଟ ବୁଦ୍ଧିରୁ ହିଁ ବାହାରିଥିଲା ।

ଗୋଟିଏ ପିଲା ନିମାଇଁ ନିକଟକୁ ଯାଇ ପଚାରିଲା, 'ତୁ କାଇଁ ଏତେ ଝଡ଼ି ଯାଇଛୁ ? ତୋ ଦେହ ଭଲ ନ ଥିଲା କିରେ ?'

ଉତ୍ତର ଦେଲା ନିମାଇଁ, 'ମୋତେ ଜ୍ୱର ହୋଇଥିଲା । ସେଇଥିପାଇଁ ଝଡ଼ିଯାଇଛି ।'

ନିରୀହ ନିମାଇଁ ସତ କହୁଥିଲା । ଆମ ସ୍କୁଲକୁ ଆସିବା ଆଗରୁ ତା ଦେହ ଖରାପ ହେବା ଆଗରୁ ସେ ଆହୁରି ଅଧିକ ମୋଟାମୋଟି ଥିଲା ହୁଏତ । ଏହାର ଅର୍ଥ ତାକୁ ଚିଡ଼େଇବାର କୌଶଳଟି ବ୍ୟର୍ଥ ହୋଇଗଲା ।

ମୋର ବାଲ୍ୟବନ୍ଧୁ ନିମାଇଁ ଅର୍ଥାତ ନିମାଇଁଚରଣ ଦାସ ବର୍ତ୍ତମାନ ରାସାୟନିକ ବିଜ୍ଞାନର ପ୍ରଧ୍ୟାପକ । ପିଲାଦିନର ଏହି ଘଟଣାଟି ସେ ମନେ ରଖି ନ ଥିବ ନିଶ୍ଚୟ । ଏ ଯାଏଁ ଆମେ ଅନ୍ତରଙ୍ଗ ବନ୍ଧୁ ହୋଇ ଆସିଛୁ ।

ଗଙ୍ଗା ଅର୍ଥାତ ଗଙ୍ଗାଧର ପୂଜାପଣ୍ଡା ପାଠପଢ଼ାରେ ବେଶି ଆଗେଇଲା ନାହିଁ । କିଛିଦିନ ଓଡ଼ିଶୀ ସଙ୍ଗୀତ ଚର୍ଚ୍ଚା କଲା । ବର୍ତ୍ତମାନ ସେ ପୁରୀର ଏକ ପ୍ରକାଣ୍ଡ ହୋଟେଲର ମାଲିକ । ଜଣେ ବାଲ୍ୟବନ୍ଧୁ ଏମନ୍ତ ଆର୍ଥିକ ପ୍ରତିପତ୍ତିରେ ମୁଁ ଯଥାର୍ଥରେ ଆନନ୍ଦିତ ।

ଜଗନ୍ନାଥ ନାୟକଙ୍କର ଘର ଶ୍ୟାମାକାଳୀଙ୍କ ମନ୍ଦିର ନିକଟରେ, ବାଲିସାହିରେ । ଗଙ୍ଗା ଓ ନିମାଇଁଙ୍କ ସହିତ ଚାଲି ଚାଲି ସେ ଆସୁଥିଲେ ସ୍କୁଲକୁ ଓ ପରେ ଟିଉସନ କରୁଥିଲେ ହାବିଳୀ ଗଳିରେ-ମୋର ଜଣେ ସହପାଠୀ ବାବୁଲାଘରେ । କେବେ କେବେ ଆମ ସ୍କୁଲରେ ଟିଉସନ କରୁଥିଲେ ସ୍କୁଲ ଶେଷ ହେବା ପରେ ।

ବାବୁଲା ଥିଲା ଜଗନ୍ନାଥ ସାରଙ୍କ ଅନ୍ୟତମ ପ୍ରିୟ ଛାତ୍ର । ତାଙ୍କ ପରିବାରଟିର ଆର୍ଥିକ ଅବସ୍ଥା ଆପାତତଃ ସ୍ୱଚ୍ଛଳ ଥିଲା ଓ ତାଙ୍କର ଏକ ମହଲା କୋଠାଘରେ ସଞ୍ଜରେ ସେ ଟିଉସନ କରୁଥିଲେ । ବାବୁଲାର ଚାଲିଚଳନରେ ବି କିପରି କେଜାଣି ଫୁଟି ଉଠୁଥିଲା ଏହିପରି ଭାବଟିଏ-ଯେ ସେ ଆମଠାରୁ ଟିକିଏ ଭିନ୍ନ ଓ ବଡ଼ ।

ଥରେ ଜଗନ୍ନାଥ ସାର ଗୋଟିଏ ଅଙ୍କ କଷିବାକୁ ଦେଲେ ଆମକୁ । ଅଙ୍କଟି ଆମ ପାଇଁ ଜଟିଳ ଥିଲା । ଆମେ ଅସହାୟ ଭାବରେ ସାରଙ୍କ ମୁହଁକୁ ଅନାଇଲୁ । ସାର ଆଦେଶ ଦେଲାଭଳି କହିଲେ, 'ବାବୁଲା !'

ବାବୁଲା ଯେପରି ଏପରି ଆଦେଶକୁ ଅପେକ୍ଷା କରୁଥିଲା ଅଙ୍କଟି କିପରି କଷିବାକୁ ହେବ, ହୁଏତ ସେ ଶିଖି ସାରିଥିଲା । ତୁରନ୍ତ ସିଲଟ ଓ ଖଡ଼ି ଧରି ଅଙ୍କ କରିବାକୁ ପ୍ରସ୍ତୁତ ହୋଇପଡ଼ିଲା ସେ ଓ ମୋତେ ଓ ଟିଉସନର ଅନ୍ୟ ପିଲାଙ୍କ ପ୍ରତି ଅବଜ୍ଞାସୂଚକ

ଦୃଷ୍ଟି ନିକ୍ଷେପ କରି କହିଲା, 'ମୂର୍ଖ !' ଆମେମାନେ ଯେତେବେଳେ ଅଙ୍କଟି କଷି ନ ପାରିଲୁ, ଆମକୁ ମୂର୍ଖଛଡ଼ା ଆଉ କ'ଣ କୁହାଯିବ ? ଆମେ ନୀରବରେ ବାବୁଲାର ମନ୍ତବ୍ୟ ହଜମ କରି ଅପେକ୍ଷା କରି ରହିଲୁ-ବାବୁଲାର ଅଙ୍କକଷା ଦେଖିବାକୁ ।

ତେବେ ଜୀବନରେ ବହୁ ଆଶ୍ଚର୍ଯ୍ୟକର ଘଟଣାମାନ ଘଟିଥାଏ । ମିନିଟ୍ ପରେ ମିନିଟ୍ କଟି ଚାଲିଲା-ସ୍ୱୟଂ ବାବୁଲା ବି ଅଙ୍କଟି କଷିପାରିଲା ନାହିଁ । ବର୍ତ୍ତମାନ ଜଗନ୍ନାଥ ସାର୍ ଅଙ୍କଟି କଷି ଆମକୁ ବୁଝାଇ ଦେଲେ ।

ପ୍ରାଥମିକ ଶିକ୍ଷା ପରେ ମୁଁ ପୁରୀ ଜିଲ୍ଲା ସ୍କୁଲରେ ଓ ବାବୁଲା ବିଶ୍ୱମ୍ଭର ବିଦ୍ୟାପୀଠରେ ପଢ଼ିବାରୁ ଆମର ସମ୍ପର୍କ ରହିଲା ନାହିଁ । ଯଥାସମୟରେ ଉଚ୍ଚ ଶିକ୍ଷା ସମାପନ କରି ବାବୁଲା କିରାଣୀ କାର୍ଯ୍ୟରେ ମୁକରୀର୍ ହେବାର ସମ୍ବାଦ ପାଇଥିଲି ।

ଜୀବନରେ ମୁଁ ବହୁ ଶିକ୍ଷକଙ୍କ ସଂସ୍ପର୍ଶରେ ଆସିଛି । ନିଜେ ମଧ୍ୟ ଜଣେ ଶିକ୍ଷକ । ମୋ ଅନୁଭୂତିରୁ ମୁଁ କହିପାରେ, ଜଗନ୍ନାଥ ନାୟକଙ୍କ ଭଳି ଭଲ ଶିକ୍ଷକ କ୍ୱଚିତ୍ ଦେଖାଯାନ୍ତି । ସେ ଆମକୁ ପଢ଼ାଉଥିଲେ ଅଙ୍କ ଓ ସାହିତ୍ୟ । ଅଙ୍କ ବା ଏରିଥମେଟିକ୍‌ର ମୂଳଦୁଆ ସେ ଏପରି ପକାଇଥିଲେ ଯେ ପରେ ହାଇସ୍କୁଲରେ ମୋତେ ଅଙ୍କ ଅତି ସହଜ ମନେ ହୋଇଥିଲା । ଜ୍ୟାମିତି, ପରିମିତି ବା ବୀଜଗଣିତରେ ମୋର କେବେ କିପରି ଭୁଲ ହେଉଥିଲା; କିନ୍ତୁ ଅଙ୍କ ବା ଏରିଥମେଟିକରେ କେବେ ନୁହେଁ । ମୋର କୃତିତ୍ୱ କେବଳ ଜଗନ୍ନାଥ ନାୟକଙ୍କ ପାଇଁ । ଉପଯୁକ୍ତ ଗୁରୁ ହିଁ ଜୀବନର ଉନ୍ନତିର କାରଣ-ଏପରି କହିବାଟା ପୁରୁଣା କାଳିଆ ଶୁଭୁଥାଇପାରେ । କିନ୍ତୁ କଥାଟାରେ ସତ୍ୟତା ଯଥେଷ୍ଟ ।

ସାହିତ୍ୟରେ ମଧ୍ୟ ସେହିପରି ଦକ୍ଷ ଥିଲେ ଜଗନ୍ନାଥ ନାୟକ । ସରଳାର୍ଥ ବା ସାହିତ୍ୟ ପ୍ରଶ୍ନର ଉତ୍ତର କିପରି ଲେଖିବ, ସମ୍ପୂର୍ଣ୍ଣ ବୈଜ୍ଞାନିକ ଢଙ୍ଗରେ ତାହା ସେ ବୁଝାଇ ଦେଉଥିଲେ । ସେ ନିଜେ ମାଇନର ବା ସପ୍ତମ ଶ୍ରେଣୀ ଯାଏଁ ପଢ଼ିଥିଲେ ହୁଏତ । ପାଠ ପଢ଼ାଇବାର କୌଶଳ ସମ୍ପର୍କରେ କୌଣସି ଟ୍ରେନିଂ ପାଇଥିବେ ବୋଲି ମୋର ମନେ ହେଉନାହିଁ । କିନ୍ତୁ ନିଜ ଅନୁଭୂତି ହିଁ ଥିଲା ତାଙ୍କର ଟ୍ରେନିଂ । କେଉଁ ସ୍କୁଲ କଲେଜ ବା ବିଶ୍ୱବିଦ୍ୟାଳୟ ନିଜ ଅନୁଭୂତିଠାରୁ ଅଧିକ ନିର୍ଭରଶୀଳ ? ଥରେ ସେ ମୋତେ ଟିଉସନରେ ଗୋଟିଏ ପଦ୍ୟର ବାଖ୍ୟା କରିବାକୁ କହିଲେ । ପାଖକୁ ପାଖ ଲାଗିଥିବା କେତୋଟି ଡେସ୍କ ଉପରେ ହାମୁଡ଼େଇ ଶୋଇ ଆଖିବୁଜି ଅତ୍ୟନ୍ତ ମନୋଯୋଗ ସହକାରେ ସେ ମୋ ବ୍ୟାଖ୍ୟା ଶୁଣୁଥାନ୍ତି । ବ୍ୟାଖ୍ୟା ଶୁଣିବା ପରେ କହିଲେ । 'ଗଣେଶ୍ୱର ପଦ୍ୟଟି ଯେପରି ବୁଝାଇଲା, ମୁଁ ତାଠାରୁ ଅଧିକ ଭଲଭାବରେ ବୁଝାଇପାରି ନ ଥାନ୍ତି ।'

ମୋର ସେହି ପରମ ପୂଜନୀୟ ଶିକ୍ଷକଙ୍କ ବାଣୀ ଅହରହ ମୋତେ ଆଶୀର୍ବାଦ ପରି ଆବୃତ କରି ରଖିଛି ।

ତାଙ୍କରି ଟିଉସନରେ ଥରେ ସିଲଟ ଓ ଖଡ଼ିରେ ମୁଁ ଲେଖି ପକାଇଲି କବିତାଟିଏ । ମୋର ପିଉସା ଚୂଡଙ୍ଗ ସାହି ପ୍ରାଥମିକ ସ୍କୁଲ ଶିକ୍ଷକ ହରିହର ମିଶ୍ରଙ୍କ ଘରେ ଦେଖିଥିଲି ଚଟି କବିତା ବହିଟିଏ- 'ବନାଗ୍ନି' । ତାହାର ଲେଖକ କିଏ ଥିଲେ ଠିକ୍ ମନେ ପଡୁନାହିଁ ବହିଟିର ପ୍ରଥମ ଧାଡ଼ିଟି ଥିଲା-ଯିଏ ସର୍ଜି ଅଛି ଏ ନୀଳ ଭୁବନ... ।

ମୁଁ ମୋର କବିତାଟିକୁ ଯିଏ ସର୍ଜି ଅଛି ଏ ନୀଳ ଭୁବନରୁ ଆରମ୍ଭ କରିଥିଲି । ବୋଧହୁଏ ଈଶ୍ୱରଙ୍କ ସମ୍ପର୍କରେ ଲେଖିଥିଲି ଦୁଇ ତିନୋଟି ପଦ ବଙ୍ଗଳାଶ୍ରୀ ରାଗରେ । ସିଲଟରେ ଲେଖିସାରି କାହାକୁ ନ ପଢ଼ାଇ ଲିଭାଇ ଦେଲି । ସାହିତ୍ୟ ଓ କବିତା ପ୍ରତି ଏଭଳି ଅନୁରାଗ ମୋ ମନରେ ସୃଷ୍ଟି କରିଥିଲେ ଜଗନ୍ନାଥ ନାୟକ ।

ବେଳେ ବେଳେ ଶ୍ରେଣୀରେ ସେ ଆମକୁ ଗପ କହୁଥିଲେ । ବଡ଼ପାଟିରେ ଜମେଇ ଜମେଇ ଧୀରେ ଧୀରେ ସେ ଗପ କହନ୍ତି । ମଝିରେ ମଝିରେ ଶ୍ରେଣୀ ବାହାରକୁ ଯାଆନ୍ତି ପାନଛେପ ପକାଇବାକୁ । ଗପ କହିବା ମଝିରେ ଏପରି ବିରତିର ଆବଶ୍ୟକତା ପଡ଼େ । ଗୋଟିଏ ଗପ ଉଲ୍ଲେଖ କରୁଛି । 'ଆବେ ପରଶୁ, ଯାବେ ପରଶୁ ବାବୁ ପଶୁରାମ' । ଗରିବ ପିଲାଟିଏ ପରଶୁ । ସମସ୍ତେ ତା' ପ୍ରତି ବ୍ୟବହାର କରୁଥିଲେ ଚାକର ପରି । କଥାରେ କଥାରେ ତାକୁ 'ଆବେ' 'ଯାବେ' ସମ୍ବୋଧନ କରୁଥିଲେ । ବିଧିରବିଧାନରେ ବଦଳି ଗଲା ତା' ଅବସ୍ଥା । ସେ ହେଲା ପ୍ରଚୁର ସମ୍ପତ୍ତିର ମାଲିକ । ତାକୁ ବର୍ତ୍ତମାନ ସମ୍ବୋଧନ କଲେ ବାବୁ ପର୍ଶୁରାମ । ଜୀବନର ବାସ୍ତବତାର କାହାଣୀ ଅନେକ ଅଙ୍ଗେନିଭେଇଥିବେ ଏଇ ଅନୁଭୂତି । ବ୍ୟକ୍ତିର ଆର୍ଥିକ ସ୍ଥିତି କ୍ଷମତା ଉପରେ ନିର୍ଭର କରେ ସମାଜର ସ୍ୱୀକୃତି; ବନ୍ଧୁ- କୁଟୁମ୍ବମାନଙ୍କ ନମସ୍କାର !

ଦେଶରେ ବହୁ ବ୍ୟକ୍ତିଙ୍କ ନାମରେ ସ୍କୁଲ କଲେଜ, ରାସ୍ତାଘାଟ ନାମିତ କରାଯାଉଛି । ପୁରସ୍କାରମାନ ଘୋଷଣା କରାଯାଉଛି । ସମ୍ବାଦପତ୍ରମାନଙ୍କରେ ପ୍ରଚାର ଚାଲିଛି । ଏହା କ'ଣ କେବଳ ସେମାନଙ୍କ ପ୍ରତିଭା, ସାମାଜିକ ଅବଦାନ ପାଇଁ ? ନା ସେମାନଙ୍କ କ୍ଷମତା ଓ ଆର୍ଥିକ ପ୍ରତିପତ୍ତି ଏପରି ସ୍ୱୀକୃତିର ଅନ୍ୟତମ କାରଣ ? ପ୍ରାଥମିକ ସ୍କୁଲ ଶିକ୍ଷକ ଜଗନ୍ନାଥ ନାୟକଙ୍କ ଅସାଧାରଣ ଶିକ୍ଷାଦାନ ପ୍ରତିଭାରସ୍ୱୀକୃତିର ସ୍ୱରୂପ କୌଣସି ସ୍ମୃତିରକ୍ଷାର ପ୍ରସ୍ତାବ କ'ଣ କେହି ଚିନ୍ତା କରିଛି ? ତାଙ୍କର ହଜାର ହଜାର ଛାତ୍ରଛାତ୍ରୀ ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଚନ୍ତି ନିଶ୍ଚୟ ।

ଥରେ ସେ କହୁଥିଲେ, ସେ ତାଙ୍କର ଆତ୍ମଜୀବନୀ ଲେଖୁଛନ୍ତି ଏବଂ ମୃତ୍ୟୁ

ପୂର୍ବରୁ ତାଙ୍କ ସ୍ତ୍ରୀଙ୍କ ନିକଟରେ ତାହା ଛାଡ଼ିଯିବେ । ଯଦି ସେ ଆତ୍ମଜୀବନୀଟି ଏ ଯାବତ୍ ଥାଏ, ତାହାର ପ୍ରକାଶ ବ୍ୟବସ୍ଥା କରାଯିବା ଉଚିତ୍ ।

ଜଗନ୍ନାଥ ନାୟକଙ୍କ ଚାରି ପୁତ୍ର ମଧ୍ୟରୁ ପ୍ରକାଶ ଥିଲେ ମୋ ଠାରୁ ବଡ଼ । ପୁରୀ ଡି.ଆଇ. ସ୍କୁଲରେ କାର୍ଯ୍ୟ କରନ୍ତି । ୧୯୬୭ରେ ମୁଁ ପୁରୀ ସାନ୍ଧ୍ୟ କଲେଜରେ ଅଧ୍ୟାପକ ଥିବା ସମୟରେ ସେ ହେଲେ ମୋର ଛାତ୍ର । ଅତ୍ୟନ୍ତ ଭଦ୍ର, ଧୀରସ୍ଥିର । ମଧ୍ୟମ ପୁତ୍ର ପ୍ରଶାନ୍ତ ମୋର ସହପାଠୀ ହେଲେ ପୁରୀ କଲେଜରେ । ସାନ ପୁଅମାନେ ବର୍ତ୍ତମାନ କେଉଁଠାରେ ମୋତେ ଜଣା ନାହିଁ ।

ପ୍ରଶାନ୍ତ ଥିଲେ ମେଳାପି ଓ ଜଣେ କୁଶଳ ଅଭିନେତା ।

କଲେଜରେ ଓ କଲେଜ ବାହାରେ ବହୁ ନାଟକରେ ଅଭିନୟ କରି ସେ ପ୍ରଶଂସିତ ହୋଇଥିଲେ । ପରେ ଶିକ୍ଷକତା କଲେ । ହଠାତ୍ କିଛି ଦିନ ତଳେ ଧରିତ୍ରୀ ନିମ୍ନୋକ୍ତ ସମ୍ବାଦଟି ଆଖିରେ ପଡ଼ିଲା ।

<u>ବସଧକ୍କାରେ ଶିକ୍ଷକଙ୍କ ମୃତ୍ୟୁ</u>

ସାକ୍ଷୀଗୋପାଳ ୧୯।୩ (ଡି.ଏନ.ଏ.) ଗତ ୧୭ ତାରିଖ ସନ୍ଧ୍ୟାରେ ଏଠାରୁ ୮ କି.ମି. ଦୂର ସାତଶଙ୍ଖ ନିକଟବର୍ତ୍ତୀ ବୀରପୁରୁଷୋତ୍ତମପୁର ଛକଠାରେ ଏକ ବସ୍ ଧକ୍କାରେ ଜଣେ ସାଇକେଲ ଆରୋହୀଙ୍କର ମୃତ୍ୟୁ ଘଟିବା ପରେ ଉତ୍ତ୍ୟକ୍ତ ଲୋକମାନଙ୍କ ପକ୍ଷରୁ ସେଠାରେ ରାସ୍ତା ଅବରୋଧ କରାଯାଇଥିଲା । ଫଳରେ କିଛି ସମୟ ଧରି ଉତ୍ତେଜନାମୂଳକ ପରିସ୍ଥିତି ଲାଗି ରହିଥିଲା ।

ପ୍ରକାଶ ଯେ,ବୀର ପୁରୁଷୋତ୍ତମପୁର ଗ୍ରାମରୁ ପତିତପାବନ ହାଇସ୍କୁଲର ପ୍ରଧାନ ଶିକ୍ଷକ ପ୍ରଶାନ୍ତ ନାୟକ (୫୨ ବର୍ଷ) ସାତଶଙ୍ଖ ବଜାରକୁ ଆସୁଥିଲେ । ଗାଁ ରାସ୍ତାରୁ ଜଗନ୍ନାଥ ସଡ଼କ ଉପରକୁ ଉଠିବା ସମୟରେ ତାଙ୍କୁ ଓଏସପି ୪୯୯ ନମ୍ବର (କାଳିଆ) ବସ ଧକ୍କା ଦେବା ଫଳରେ ସେ ଘଟଣା ସ୍ଥଳରେ ଗୁରୁତର ଆହତ ହୋଇ ସଂଜ୍ଞାହୀନ ହୋଇ ପଡ଼ିଥିଲେ । ପରେ ପରେ ତାଙ୍କୁ ସାତଶଙ୍ଖ ଚିକିତ୍ସା କେନ୍ଦ୍ରରୁ ସାକ୍ଷୀଗୋପାଳ ସରକାରୀ ଚିକିତ୍ସାଳୟ ଅଣାଯିବା ପରେ ସେଠାରେ ତାଙ୍କୁ ମୃତ ବୋଲି ଘୋଷଣା କରାଯାଇଥିଲା ।

ଶିକ୍ଷକ ପରି ଶିକ୍ଷକ ଥିଲେ ଜଗନ୍ନାଥ ନାୟକ । ତାଙ୍କରି ପଦାଙ୍କ ଅନୁସରଣ କରୁଥିଲେ ପ୍ରଶାନ୍ତ । ଶୋଚନୀୟ ଦୁର୍ଘଟଣାରେ ତାଙ୍କର ପରଲୋକ ମୋ ପାଇଁ ଏକ ଦୁଃଖାବହ ଅନୁଭୂତି ।



# ଶ୍ୟାମଳ ଶାଳବନେ ପଡ଼ିଛି ଖରା—

୧୯୫୪ ମସିହାରେ ପୁରୀଜିଲ୍ଲା ସ୍କୁଲର ବାର୍ଷିକ ପତ୍ରିକା 'ମହୋଦଧି'ରେ କବିତାଟିଏ ପ୍ରକାଶିତ ହୋଇଥିଲା-'ବିଦାୟ ଫୁଲବାଣୀ' । କବିତାର ପ୍ରଥମ ଦୁଇଧାଡ଼ି-

ଶ୍ୟାମଳ ଶାଳବନେ ପଡ଼ିଛି ଖରା,

ଫଗୁଣ ମାସ ବୋଲି ପୁଲକେ ଧରା ।

କବିତାଟିର ଲେଖକ ଥିଲେ ହରେକୃଷ୍ଣ ମହାପାତ୍ର । ସେହି ବର୍ଷ ସେ ଫୁଲବାଣୀ ସ୍କୁଲରୁ ବଦଳି ହୋଇ ଆସିଥିଲେ ପୁରୀ ଜିଲ୍ଲାସ୍କୁଲ । ଫୁଲବାଣୀକୁ ସେ ଅନେକ ସମୟରେ ମନେ ପକାଉଥିଲେ । ଫୁଲବାଣୀର ସ୍ମୃତିରେ ଲେଖିଥିଲେ କବିତାଟି ।

ସେଇବର୍ଷ ମୁଁ ପୁରୀ ଜିଲ୍ଲାସ୍କୁଲର ଷଷ୍ଠଶ୍ରେଣୀରେ ଛାତ୍ର ହେଲି । ସେ ଥିଲେ ଆମ ଶ୍ରେଣୀ ଶିକ୍ଷକ । ଗୋରା, ଧୀରସ୍ଥିର, ଚନ୍ଦା, କେବେ ଗମ୍ଭୀର ତ କେବେ ହସ ହସ । କବିପ୍ରାଣ ହରେକୃଷ୍ଣ ମହାପାତ୍ର ।

ସେ ଆମକୁ ପଢ଼ାଉଥିଲେ ସାହିତ୍ୟ ଓ ଭୂଗୋଳ । ଭାରତ ଓ ଓଡ଼ିଶାର ମାନଚିତ୍ର ଶିଖାଉଥିଲେ । ହସ୍ତାକ୍ଷର ଲେଖାଉଥିଲେ । ପ୍ରତି ପହିଲାରେ ଆମେ ସାମାନ୍ୟ ବେତନ ଦେଉଥିଲୁ; ଶ୍ରେଣୀ ଶିକ୍ଷକ ହିସାବରେ ସେ ଆମକୁ ରସିଦ୍ ଦେଉଥିଲେ । କିନ୍ତୁ ଏ ସବୁ ପାଇଁ ନୁହେଁ, ଅନ୍ୟ ଏକ କାରଣରୁ ତାଙ୍କୁ ମୁଁ ବାରମ୍ବାର ସ୍ମରଣ କରେ । ଓଡ଼ିଆ ଭାଷା, ସାହିତ୍ୟର ପ୍ରେମରେ ମୋତେ ପକାଇଥିଲେ ସେ । କବିତା, ଗଳ୍ପ ଲେଖା ପ୍ରତି ମୋ ମନରେ ମମତା ଜାଗ୍ରତ କରିଥିଲେ । 'ମହୋଦଧି'ର ଅନ୍ୟତମ ସମ୍ପାଦକ ଥିଲେ ହରେକୃଷ୍ଣ ମହାପାତ୍ର । ସେଥିରେ ପ୍ରକାଶିତ ହୋଇଥିଲା ମୋର ପ୍ରଥମ ଲେଖା 'କୌତୁକ ପ୍ରଶ୍ନ' । ତା'ପରେ 'ପ୍ରତ୍ୟୁଷ ଶୋଭା', 'ପ୍ରଦୋଷ ଶୋଭା' । ରାଗ କଳହଂସକେଦାର । 'ଶ୍ୟାମଳ ଶାଳବନେ ପଡ଼ଛି ଖରା'ର ପ୍ରଭାବ ସେଥିରେ ସ୍ପଷ୍ଟ-

ଶ୍ୟାମ ଶସ୍ୟକ୍ଷେତ୍ରେ ଖେଳଇ ଲହରୀ,

ନିଖିଳ ଧରଣୀ ଉଠେ କି ଶିହରି !

ଷଷ୍ଠ-ସପ୍ତମ ଶ୍ରେଣୀରେ ବହୁ ସମୟରେ ସେ କବିତା ଆବୃତ୍ତି କରୁଥିଲେ ସୁଲଳିତ କଣ୍ଠରେ । ମଧୁସୂଦନ ରାଓଙ୍କ କବିତା । ରାଧାନାଥଙ୍କ 'ଚନ୍ଦ୍ରଭାଗା' କାବ୍ୟ ତାଙ୍କର କଣ୍ଠସ୍ଥ ଥିଲା । 'ଚନ୍ଦ୍ରଭାଗା' ଆବୃତ୍ତି କରି ସେ ଆମକୁ ବୁଝାଉଥିଲେ । ଅନେକ କବିତା ସେ ଆମକୁ ମୁଖସ୍ଥ କରାଇଥିଲେ । ଯେପରି, 'ଦେବୀ ବୀଣାପାଣି କେଉଁ ପାପ ଫଳେ, କରୁଣା ତୋହର ଊଣାଏ ଉତ୍କଳେ,' ଇତ୍ୟାଦି । ସେ ସବୁ ମୋର ପ୍ରାୟ ମନେ ଅଛି । ସେସବୁ କବିତା ଆବୃତ୍ତି କଲେ ମୁଁ ସ୍ୱତଃ ସ୍ମରଣ କରେ ହରେକୃଷ୍ଣ ମହାପାତ୍ରଙ୍କୁ ।

ହରେକୃଷ୍ଣ ମହାପାତ୍ର ଅନେକ ସମୟରେ ଶ୍ରେଣୀରେ ଗପମାନ କହୁଥିଲେ । ଦିନ ପରେ ଦିନ ସେ ଗୋଟିଏ ଲମ୍ବା କାହାଣୀ କହିଥିଲେ-ଢ଼ିଙ୍କି କିପରି ସ୍ୱର୍ଗରେ ପହଞ୍ଚିଲା ଓ ସ୍ୱର୍ଗର ଦେବତାମାନେ କିପରି ଢ଼ିଙ୍କିର ଶକ୍ତି ଓ ମହିମାରେ ଅଭିଭୂତ ହୋଇ ତାହାର ଦାସତ୍ୱ ସ୍ୱୀକାର କଲେ । ପ୍ରତିଥର ସେ କହୁଥିବା କାହାଣୀଟି ଲେଖି ରଖିବାକୁ ମୋତେ ନିର୍ଦ୍ଦେଶ ଦେଉଥିଲେ । ତାଙ୍କ କାହାଣୀଟି ଶେଷ ହେବାପରେ ମୁଁ ସତୁରୀ/ଅଶୀ ପୃଷ୍ଠାର ମୋ ଲେଖାଟି ତାଙ୍କୁ ଦେଲି । ସେତେବେଳେ ମୋର ସପ୍ତମ ଶ୍ରେଣୀ । ସେ ପରେ 'ଢ଼ିଙ୍କିର ଦିଗ୍‌ବିଜୟ' ନାମରେ ଉପନ୍ୟାସଟିଏ ପ୍ରକାଶ କଲେ । ଉପନ୍ୟାସଟି ତାଙ୍କର, ଏଥିରେ ସନ୍ଦେହ ନାହିଁ । କିନ୍ତୁ ସେ ନିଜେ ଶ୍ରେଣୀରେ କହିଥିଲେ, ମୁଁ ତାଙ୍କ କାହାଣୀଟି ଲେଖି ନଥିଲେ ସେ ତାହାକୁ ଉପନ୍ୟାସ ରୂପ ଦେଇ ପାରି ନ ଥାନ୍ତେ । ସେ ମଧ୍ୟ ଆଉ ଗୋଟିଏ ଉପନ୍ୟାସ ଲେଖିଥିଲେ-'ଦସ୍ୟୁରାଣୀ ମୀରା' । ବର୍ତ୍ତମାନ ଏ ଦୁଇଟି ଉପନ୍ୟାସ ମିଳିବା ହୁଏତ ସହଜ ନୁହେଁ ।

ଜିଲ୍ଲାସ୍କୁଲରେ ସେତେବେଳେ ପ୍ରଧାନ ଶିକ୍ଷକ ଥିଲେ କବି ବୈକୁଣ୍ଠନାଥ ପଟ୍ଟନାୟକ । ଶିକ୍ଷକମାନଙ୍କ ମଧ୍ୟରେ ଥିଲେ ନାଟ୍ୟକାର ଅଦ୍ୱୈତ ଚରଣ ମହାନ୍ତି ଏବଂ ଶିଳ୍ପୀ ଗୋପାଳ କାନୁନଗୋ । ଶିଳ୍ପୀ କାନୁନଗୋଙ୍କ ସହିତ ହରେକୃଷ୍ଣ ମହାପାତ୍ରଙ୍କର ଘନିଷ୍ଠ ବନ୍ଧୁତା ଥିଲା । କାନୁନଗୋଙ୍କ '[illegible] ଖାଆମା' ଅନୁବାଦରେ ମହାପାତ୍ରଙ୍କର ଯଥେଷ୍ଟ ଅବଦାନ ଥିଲା ।

ହରେକୃଷ୍ଣ ମହାପାତ୍ରଙ୍କର ଅସଂଖ୍ୟ ଗୁଣମୁଗ୍ଧ ଛାତ୍ରଛାତ୍ରୀଙ୍କ ମଧ୍ୟରେ ମୁଁ

ଜଣେ । ବହୁବର୍ଷ ଧରି ତାଙ୍କ ସହିତ ସଂପର୍କ ହରାଇ ବସିଥିଲି । ସମ୍ବାଦପତ୍ରରେ ତାଙ୍କର ପରଲୋକ ସମ୍ବାଦ ମୋତେ ବାରମ୍ବାର ଶୁଣାଇଛି ତାଙ୍କ କବିତାର ସେଇ ଦୁଇଟି ଧାଡ଼ି-

ଶ୍ୟାମଳ ଶାଳବନେ ପଡ଼ିଛି ଖରା,
ଫଗୁଣ ମାସ ବୋଲି ପୁଲକେ ଧରା ।



# ଚନ୍ଦନ ତଲାବ କରଲୋ ସ୍ନାନ୍

ନରେନ୍ଦ୍ର ପୋଖରୀ ଓ ତା ପାଖଆଖ ଅଞ୍ଚଳ ସହିତ ମୋ ସମ୍ପର୍କ ପିଲାଦିନସାରା । ଏପରିକି ସ୍କୁଲ୍ ଶେଷକରି ପୁରୀ କଲେଜରେ ପଢ଼ିଲାବେଳେ ମଧ ବହୁ ସମୟରେ ମୁଁ ଯାଉଥିଲି ନରେନ୍ଦ୍ର କୋଣକୁ । ଏହାର କାରଣ ମୋ ନନାଙ୍କ ଦୈନନ୍ଦିନ କାର୍ଯ୍ୟର କ୍ଷେତ୍ର ଥିଲା ନରେନ୍ଦ୍ର କୋଣ ।

ପୁରୀ ସହରର ଯେଉଁ କେତୋଟି ପୁଷ୍କରିଣୀ ତୀର୍ଥର ଗୌରବ ଲାଭ କରିଛନ୍ତି, ସେଗୁଡ଼ିକ ମଧରେ ନରେନ୍ଦ୍ର ଅନ୍ୟତମ । ତେଣୁ ପୁରୀକୁ ଆଗତ ଯାତ୍ରୀମାନେ ବହୁ ସଂଖ୍ୟରେ ନରେନ୍ଦ୍ରସ୍ନାନ କାରିବାକୁ ଆସନ୍ତି । ସ୍ନାନପରେ ସେମାନେ ସଂକଳ୍ପ କରଥାନ୍ତି । 'ସଂକଳ୍ପ' କରାଉଥିବା ବ୍ରାହ୍ମଣମାନଙ୍କ ମଧ୍ୟରେ ମୋ ନନା ଥିଲେ ଜଣେ । ଏଇ ସଂକଳ୍ପ କାର୍ଯ୍ୟରେ ପ୍ରାୟ ସାରାଦିନ ରହୁଥିଲେ ନରେନ୍ଦ୍ର କୋଣରେ । ତାଙ୍କୁ ଭେଟିବା ପାଇଁ ମୋତେ ସେଠାକୁ ଯିବାକୁ ହେଉଥିଲା ।

ତେବେ ନରେନ୍ଦ୍ର କୋଣ ନନାଙ୍କ କର୍ମକ୍ଷେତ୍ର କହିବାଟା ଯଥେଷ୍ଟ ନୁହେଁ । ଗୋଟାଏ ଅର୍ଥରେ ତାହା ଥିଲା ତାଙ୍କର ଘର । ସଂସ୍କୃତରେ କୁହାଯାଏ, ଯେଉଁଠାରେ ଘରଣୀ, ସେଇଠାରେ ଘର । ମୋ ବୋଉତ ମରିଯାଇଥିଲା; ମୋର ଏକମାତ୍ର ସାନ ଭଉଣୀର ଦାୟିତ୍ୱ ଗ୍ରହଣ କରିଥିଲା ଜେଜେନାନୀ । ମୋର ସମୟ କଟୁଥିଲା ସ୍କୁଲରେ, ଖେଳ ପଡ଼ିଆରେ, ସାଙ୍ଗସାଥୀ ବା ସମ୍ପର୍କୀୟ ଭାଇଭଉଣୀଙ୍କ ସାଙ୍ଗରେ । ନନା ଖରାବେଳେ ଥରେ ଘରକୁ ଆସି ନିଜ ହାତରେ ରାନ୍ଧି ଖାଉଥିଲେ । ତା'ପରେ ବାହାରକୁ ଚାଲିଯାଇ ଫେରୁଥିଲେ ରାତିରେ । ମୁଁ ସ୍କୁଲଯିବା ଆଗରୁ ଦେଠେଇ ଘରେ ଖାଉଥିଲି । ସ୍କୁଲରୁ ଫେରିଲାପରେ ନନାଙ୍କ ରନ୍ଧା । ନନା ଅବଶ୍ୟ ରାତିରେ ଫେରୁଥିଲେ । କିନ୍ତୁ ସକାଳୁ ପୁଣି ଚାଲିଯାଉଥିଲେ ନରେନ୍ଦ୍ର କୋଣକୁ । ମୋ ସହିତ ତାଙ୍କର ବିଶେଷ କଥାବାର୍ତ୍ତାର ସୁଯୋଗ ନଥିଲା । ମୋ ଅନୁଭୂତିରୁ ମୁଁ ଜାଣେ, ବୋଉ ନଥିଲେ ବାପା-

ପୁଅଙ୍କ ସମ୍ପର୍କ ସ୍ୱାଭାବିକ ଓ ଅନ୍ତରଙ୍ଗ ହେବା ସହଜ ନୁହେଁ । ବୋଉକୁ ହରାଇଥିବାରୁ ସ୍ୱଭାବିକ ପାରିବାରିକ ଜୀବନରୁ ମୁଁ ଅନେକାଂଶରେ ବଞ୍ଚିତ ହୋଇଥିଲି ।

ନନା ନରେନ୍ଦ୍ର କୋଣରେ ଯାତ୍ରୀମାନଙ୍କୁ କେବଳ ସଂକଳ୍ପ କରାଉନଥିଲେ, ସେଠାରେ ପଥର ମଣ୍ଡପ ଉପରେ ତାସ୍-ପଶା ଖେଳୁଥିଲେ; କେବେକେବେ ସେ ଓ ତାଙ୍କ ସାଙ୍ଗମାନେ ରୋଷାଇ ବସାଉଥିଲେ । ନରେନ୍ଦ୍ରକୋଣରେ ଯେଉଁ ଘାଟରେ ଜଗନ୍ନାଥଙ୍କ ମୂର୍ତ୍ତିଟି ଅଛି- ନିକଟରେ ବରଗଛ, ମଣ୍ଡପ ଓ ପାଣିକଳ-ସେଇଠାରେ ଯାତ୍ରୀଙ୍କର ଗହଳି ହୁଏ ସବୁଠାରୁ ବେଶୀ । ଯାତ୍ରୀମାନେ ନରେନ୍ଦ୍ରରେ ଗାଧୋଇ ସାରି ପୋଛିପାଛି କିମ୍ବା ଓଦା ସରସର ହୋଇ ଧାଡ଼ିହୋଇ ବସନ୍ତି ଓ ବ୍ରାହ୍ମଣମାନେ ହାତରେ ପାତ୍ରୀ, ଗୁଆ, କୁଶ ଇତ୍ୟାଦି ଧରି ସଂକଳ୍ପ କରାନ୍ତି:

ଗଙ୍ଗେଚ ଯମୁନେଚୈବ ଗୋଦାବରୀ-ସରସ୍ୱତୀ

ନର୍ମଦେ ସିନ୍ଧୋ-କବେରୀ ଜଳେସ୍ମିନ୍ ସନ୍ନିଧିଂ କୁରୁ ।

କୁରୁକ୍ଷେତ୍ର-ଗୟ ଗଙ୍ଗା ପ୍ରଭାସ ପୁଷ୍କରାଣୀ ଚ

ଏତାନି ପୁଣ୍ୟ ତୀର୍ଥାନି ସଂକଳ୍ପକାଳେ ଭବନ୍ତୁ ନଃ ।

ବ୍ରାହ୍ମଣମାନେ ଧୀରେ ଧୀରେ ଏ ଶ୍ଳୋକ ବୋଲିଲେ ଯାତ୍ରୀମାନେ ତାହା ଦୋହରାନ୍ତି । ମୋ ନନା ବିଶେଷ ସଂସ୍କୃତ ଜାଣିନଥିଲେ ଅବଶ୍ୟ, କିନ୍ତୁ ସ୍ପଷ୍ଟ ଭାବରେ ଖୁବ୍ ଉଚ୍ଚସ୍ୱରରେ ଏଇ ଶ୍ଳୋକ ବୋଲି ସେ ଯାତ୍ରୀମାନଙ୍କୁ ସଂକଳ୍ପ କରାଉଥିଲେ । କୌଣସି କୌଣସି ସମୟରେ ବେଶୀସଂଖ୍ୟକ ଯାତ୍ରୀଙ୍କ ସମାଗମ ହେଲେ ଏପରି ସଂକଳ୍ପ କରାଇବା ଫଳରେ ତାଙ୍କର ତଣ୍ଟି ପଡ଼ିଯାଉଥିଲା । ସେପରି ସମୟମାନଙ୍କରେ ସେ ଅତ୍ୟନ୍ତ କ୍ଳାନ୍ତ, ମଳିନ ଅଥଚ ଆନନ୍ଦିତ ଦିଶୁଥିଲେ । ଅଧିକ ଯାତ୍ରୀ ସମାଗମରେ ବ୍ରାହ୍ମଣମାନଙ୍କ ଆୟ ବଢ଼ିଯିବା ସ୍ୱଭାବିକ ।

ନରେନ୍ଦ୍ରରେ ଗାଧୋଇ ସଂକଳ୍ପ ସାରି ଯାତ୍ରୀମାନେ ପାହାଚ ଉପରକୁ ଉଠିଆସିଲା ବେଳକୁ ବାମ ପାଖରେ ଜଗନ୍ନାଥଙ୍କ ମୂର୍ତ୍ତି; ମୂର୍ତ୍ତି ସମ୍ମୁଖରେ ପ୍ରକାଣ୍ଡ ପୀତଳ ଥାଳି; ଥାଳିରେ ତୁଳସୀ ଚନ୍ଦନ ମିଶା ପାଦୁକ । ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ପୂଜକ ବାଞ୍ଛାନିଧି ଶତପଥୀଙ୍କ ଚିତ୍କାର:

ଚନ୍ଦନ ତଲାବ କରଲୋ ସ୍ନାନ,

ସବକୋ ସନ୍‌ମତି ଦେ ଭଗବାନ୍ ।

ଯାତ୍ରୀମାନେ ପାଦୁକ ନିଅନ୍ତି; ଜଗନ୍ନାଥଙ୍କଠାରେ ସେମାନଙ୍କ ବିଶ୍ୱାସ ଅଣି-ଦୋ'ଅଣି ହୋଇ ଠଣଠଣ ପଡ଼େ ପ୍ରକାଣ୍ଡ ଥାଳିରେ । ଦଳକୁ ଦଳ ଯାତ୍ରୀ କିଛି ସମୟ ବ୍ୟବଧାନରେ ଏହିପରି ଉଠିଆସନ୍ତି ନରେନ୍ଦ୍ର ପୋଖରୀରୁ; ଶତପଥୀଙ୍କ ସ୍ୱର ତେଜି ଉଠେ ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ । ନିକଟରେ ବରଗଛ ତଳେ ସିମେଣ୍ଟ ମଣ୍ଡପରେ ଦିନର ଯେ କୌଣସି ସମୟରେ କେହି ନା କେହି ବସିଥାନ୍ତି ବା ଶୋଇଥାନ୍ତି; ଗପସପ ତାସ୍-ପଶା ଚାଲିଥାଏ । ଅଳ୍ପ ଦୂରରେ ତିନି ଚାରୋଟି ଉଠା ଦୋକାନରେ ନରେନ୍ଦ୍ରରେ ଗାଧୋଇବାକୁ ଆସୁଥିବା ଲୋକଙ୍କପାଇଁ ବାସ୍ନାତେଲ ବିକ୍ରୀ ହୁଏ; ସୋଲବିଡ଼ା, ରବର ଟିଉବ୍ ଇତ୍ୟାଦି ଭଡ଼ାରେ ମିଳେ । ଗାଧୁଆଳିମାନେ ଛୋଟ ଛୋଟ ଦୀପାଳିରେ ପଇସାକର ଲେଖାଏଁ ତେଲ ନେଇ ନରେନ୍ଦ୍ର ପାହାଚରେ ବସି ଲଗାନ୍ତି ଓ ତା'ପରେ ଧୀରେ ଧୀରେ ପଶନ୍ତି ପାଣିରେ-ଧୀରେ ଧୀରେ କାରଣ ପୋଖରୀର ପାହାଚସବୁ ବହଲିଆ ଶିଉଳିରେ ପ୍ରାୟ ଖସଡ଼ା ଥାଏ । ପାଣି କେତେବେଳେ ସଫାଥାଏ-ବିଶେଷତଃ ବର୍ଷା ଦିନରେ- ଅନ୍ୟଦିନରେ ଥାଏ ମୋଟା-ସେଥିରେ ଭାସୁଥାଏ ମେଞ୍ଚ ମେଞ୍ଚା ନେଳି । କେବେ କେମିତି ପୁରୀ ମୁନିସିପାଲଟି କିମ୍ବା ସହରର କୌଣସି ବଦାନ୍ୟ ବ୍ୟକ୍ତି ହାତରୁ ପଇସା ଖର୍ଚ୍ଚକରି ସେଇ ନେଳି ସଫା କରାନ୍ତି । ମୁନିସିପାଲିଟିର ପୁରୁଣା ତେଜରାତି ଦୋକାନର ମାଲିକ ମହେଶ୍ୱର ମିଶ୍ର ଥରେ ନରେନ୍ଦ୍ରର ନେଳି ସଫା କରାଇଥିଲେ । ତାଙ୍କର ପ୍ରଶଂସା ସାହୀ-ଗଳିରେ ଶୁଣିବାକୁ ମିଳୁଥିଲା । କେବଳ ଯାତ୍ରୀମାନେ ନୁହଁନ୍ତି, ଆଖପାଖର ବହୁ ପରିବାର ଗାଧୁଆ ପାଧୁଆ ପାଇଁ ନିର୍ଭରକରନ୍ତି ନରେନ୍ଦ୍ର ପୋଖରୀ ଉପରେ । ବହୁ ସମୟରେ ଦଶାହ କ୍ରିୟାସବୁ ଅନୁଷ୍ଠିତ ହୁଏ ନରେନ୍ଦ୍ର କୋଣରେ । ସେଥିପାଇଁ ଯେ କୌଣସି ସମୟରେ ବାରିକମାନେ ସେଠାରେ ଇତସ୍ତତଃ ହେଉଥାନ୍ତି ।

ମୋ ନନା ବାଞ୍ଛାନିଧି ଶତପଥୀଙ୍କୁ ଭାଇନା ଡାକୁଥିଲେ । ମୁଁ ତେଣୁ ତାଙ୍କୁ ଡାକୁଥିଲି ବଦେଇ ଓ ମୋତେ ସେ ସ୍ୱାଭାବିକ ଭାବରେ ପୁତୁରା ଦୃଷ୍ଟିରେ ଦେଖୁଥିଲେ । ତାଙ୍କର ଘର ମଧ୍ୟ ଥିଲା ଆମରି ପଥୁରିଆ ସାହୀରେ । ତାଙ୍କର ଥିଲେ ତିନି ପୁଅ, ଗୋଟିଏ ଝିଅ । ଝିଅର କମ୍ ବୟସରେ ବିବାହ ହୋଇଥିଲା । ବଡ଼ପୁଅ ନରେନ୍ଦ୍ର କୋଣର ଗୋଟିଏ ଗଛରୁ ଖସିପଡ଼ି ଅକାଳରେ ପ୍ରାଣ ହରାଇଥିଲା । ମୁଖର ଗଢ଼ଣରେ କିଛି ବିକୃତି ଥିବାରୁ ମେ ପରିଷ୍କାର କଥା କହିପାରୁନଥିଲା । ଆଉ ଗୋଟିଏ ପୁଅ ବସ୍‌ରେ କିଛିଦିନ କ୍ଲିନର କାମ କଲାପରେ ବର୍ତ୍ତମାନ ପୁଣି ନନାଙ୍କ ଜଗନ୍ନାଥମୂର୍ତ୍ତି ପାଖରେ ବସି ଯାତ୍ରୀମାନଙ୍କ ଉଦ୍ଦେଶ୍ୟରେ ଚିତ୍କାର କରୁଛନ୍ତି-'ନରେନ୍ଦ୍ର ତଲାବ କରଲୋ ସ୍ନାନ' । ସାନ ପୁଅ ଦାଢ଼ୀ ବଢ଼ାଇ କରୁଛି ସେହିପରି କିଛି କାର୍ଯ୍ୟ ।

ବାଞ୍ଛାନିଧି ଶତପଥୀ ଥିଲେ କଳା, ଡ଼ନ୍ଧା, ସୁସ୍ଥସବଳ, ଶାନ୍ତଶିଷ୍ଟ ମଣିଷ । ଘରେ ତାଙ୍କର ସ୍ତ୍ରୀ ଥିଲେ ମଧ୍ୟ ସେ ପ୍ରାୟ ରହୁଥିଲେ ନରେନ୍ଦ୍ର କୋଣରେ ଜଗନ୍ନାଥଙ୍କ ମୂର୍ତ୍ତି ପୂଜା ପାଉଥିବା ଛୋଟ ଚାଳଘରଟିରେ । ତାଙ୍କର ଓ ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ପରେ ଘରଟି ବିକ୍ରୀ ହୋଇଯାଇଛି ।

ନନାଙ୍କ ସାଙ୍ଗମାନଙ୍କ ମଧ୍ୟରେ ଜଣେ ଥିଲେ ଚକ୍ରଧର-ଚକରୁ । ମେଢ଼ିଆ, ଚାଲିଚଳଣ ଅଙ୍କାବଙ୍କା, ମୁଣ୍ଡରେ ମେଞ୍ଚାଏ କୁଞ୍ଚୁକୁଞ୍ଚୁ ବାଳ । ସେ ଟିକିଏ ବୋକା ଥିଲେ ହୁଏତ; କାରଣ ତାଙ୍କୁ ସମସ୍ତେ ଥଟ୍ଟା କରୁଥିଲେ ଓ ବୋଲହାକ ବତାଉଥିଲେ । ତାଙ୍କର ନିଜର ପରିବାର ଥିଲା ବୋଲି ମନେହୁଏନାହିଁ । ସଂକଳ୍ପ କରାଇବା, ଅନ୍ୟମାନେ ତାସ୍-ପଶା ଖେଳିଲାବେଳେ ପାଖରେ ବସିବା, ରୋଷେଇବାସରେ ସାହାଯ୍ୟ କରିବା, କେଉଁଠି ପଙ୍ଗତ ହେଲେ ଯଥା ସମୟରେ ପହଞ୍ଚିବା ଥିଲା ତାଙ୍କର କାର୍ଯ୍ୟକ୍ରମ । ମୁଁ ଯେତେବେଳେ ନରେନ୍ଦ୍ରକୋଣ ଯାଉଥିଲି, ତାଙ୍କୁ ଦେଖୁଥିଲି ନିଶ୍ଚୟ ।

ଆଉ ଜଣେ ଥିଲେ ପାଢ଼ୀ । ତାଙ୍କର ଭଲ ନାଁଆଟା ମୋର ମନେନାହିଁ । ସେ ମୋ ନନାଙ୍କ ଭଳି କଥାକୁହାଳିଆ ମୁରବ୍ବୀ ଶ୍ରେଣୀୟ ନଥିଲେ; କିମ୍ବା ନଥିଲେ ଚକରୁଙ୍କ ପରି ବୋକା । ଚୁପ୍‌ଚାପ୍ ସାଧାରଣ ମଣିଷ । ଥରେ ମୁଁ ଓ ନନା ତାଙ୍କ ଘରକୁ ଯାଇଥିଲୁ । କୌଣସି ସାହୀରେ ଛୋଟ ଚାଳଘରେ ରହୁଥିଲେ ସେ ଓ ତାଙ୍କର ସ୍ତ୍ରୀ । ତାଙ୍କ ସାଙ୍ଗିଆରୁ ମନେ ହେଉଛି-ସେ ହୁଏତ ଗଞ୍ଜାମ ଅଞ୍ଚଳରୁ ଆସି ପୁରୀରେ ରହୁଥିଲେ ।

ନରେନ୍ଦ୍ର ପୋଖରୀକୁ ଲାଗି କାଳିନ୍ଦୀଶ୍ୱରଙ୍କ ମନ୍ଦିର । ସେ ମନ୍ଦିରର ପୂଜକ ମଧ୍ୟ ଥିଲେ ନନାଙ୍କର ସାଙ୍ଗ । କାଳିନ୍ଦୀଶ୍ୱରଙ୍କ ମନ୍ଦିରରେ ବଙ୍ଗାଳୀ ଯାତ୍ରୀଙ୍କର ଖୁବ୍ ଭିଡ଼ ହୁଏ । ଚୈତନ୍ୟ ମହାପ୍ରଭୁ ଏଇ ମନ୍ଦିର ପରିଦର୍ଶନ କରିଥିଲେ ବୋଲି କୁହାଯାଏ । ପୂଜକଙ୍କ ନାମ ମୋର ମନେପଡୁନାହିଁ । ମୋଟା ଚେହେରା; ବଡ଼ ପାଟିରେ ଖୁବ୍ ଦାମ୍ଭିକତାର ସହିତ କଥା କହନ୍ତି । ବେଳେବେଳେ କାଳିନ୍ଦୀଶ୍ୱରଙ୍କ ଭୋଗ ଟିକିଏ ଧରି ମୋତେ ସେ ଦୂରରୁ ବଡ଼ ପାଟିରେ ଡାକନ୍ତି । ମୁଁ ତାଙ୍କ ପାଖକୁ ଯାଇ ଭୋଗନିଏ ।

ବର୍ତ୍ତମାନ ନରେନ୍ଦ୍ର କୋଣରେ ବହୁ ଘର ତିଆରି ହୋଇଗଲାଣି; ସବୁବେଳେ ଲୋକ ଗହଳି । କିନ୍ତୁ ଚାଳିଶି ବର୍ଷ ତଳେ ସେ ଅଞ୍ଚଳଟିର ଚେହେରା ଥିଲା ଭିନ୍ନ । କେବଳ ଚନ୍ଦନ ଯାତ୍ରା ସମୟରେ ସେଠାରେ ଭିଡ଼ ହେଉଥିଲା । ମାଟି କଣ୍ଢେଇର ଦୋକାନସବୁ, ପିଲାମାନେ ଘୋଡ଼ା, ଚୌକୀରେ ବସି ଘୂରିବୁଲିବାପାଇଁ ଚକ୍ରୀ, ନରେନ୍ଦ୍ର ପୋଖରୀର ପାହାଚ ଉପରେ ଦ୍ରୁତ ଗତିରେ ଚାଲୁଥିବା 'କାଚ ବଜର' ମୁଆଁ ବିକାଳୀମାନଙ୍କର ଚିତ୍କାର । ଚନ୍ଦନ ଯାତ୍ରା ସମୟରେ ଦୁଇ ତିନୋଟି ଗରିବ ମୁସଲମାନ ପରିବାର ଖେଳନା

ଉଡ଼ାଜାହାଜ ତିଆରି କରି ବିକନ୍ତି ପ୍ରତିବର୍ଷ । ଚନ୍ଦନ ସମୟରେ ସାରା ପୁରୀ ସହର ଉଠିଆସେ ନରେନ୍ଦ୍ର କୋଣକୁ । ଠାକୁରମାନଙ୍କ ଚାପଖେଳ ନରେନ୍ଦ୍ର ଜଳରେ ସୃଷ୍ଟିକରେ ଅଲୌକିକ ପରିବେଶ । ମଲ୍ଲୀମାଳ, ବାସନାତେଲ, ନରେନ୍ଦ୍ରରେ ଗାଧୋଉଥିବା ଟୋକାମାନଙ୍କ ଓଡ଼ିଶୀ ଗାନ, ସରାମାନଙ୍କରେ ବିକ୍ରୀ ହେଉଥିବା କଟାଫଳ, ଉଖୁଡ଼ା, ଖିରି, ପୁଣି ପଲଟଣ କରି ବିଭିନ୍ନ ଜାଗାଘରୁ ଚନ୍ଦନଗାଧୁଆ ପାଇଁ ଆସୁଥିବା ଦଳଦଳ ଲୋକ- ପ୍ରଚଣ୍ଡ ଗ୍ରୀଷ୍ମଋତୁକୁ ମଧ କରିପକାଏ ଆମୋଦଦାୟକ ଓ ଉପଭୋଗ୍ୟ ।

ଯାତ୍ରୀମାନଙ୍କ ଛଡ଼ା ବହୁ ବାବାଜୀ ମଧ ନରେନ୍ଦ୍ର କୋଣରେ ଆସି ପହଞ୍ଚନ୍ତି । ନନା କେବେ କିପରି ଜଣେ ଦି'ଜଣ ବାବାଜୀଙ୍କୁ ଆମ ଘରକୁ ଆଣି ନିଜ ହାତରେ ରୋଷାଇକରି ଖାଇବାକୁ ଦିଅନ୍ତି । ଥରେ ଜଣେ ଗେଡ଼ା, ଦାଢ଼ିଆ ହିନ୍ଦୁସ୍ଥାନୀ ବାବାଜୀ ଆସିଥିଲେ ଆମ ଘରକୁ । ସେ ପରମ ଆନନ୍ଦରେ ଆମ ସଙ୍ଗେ ଭାତ ଓ ମାଂସ ତରକାରୀ ଖାଇଥିଲେ ।

ନାମ ମନେପଡୁନଥିଲେ ମଧ ନରେନ୍ଦ୍ର କୋଣର ବହୁ ଚରିତ୍ରଙ୍କ ସହିତ ମୋର ନିବିଡ଼ ପରିଚୟ ଥିଲା । ଏପରିକି ଯେଉଁ ଭିକାରୀ ପିଲାମାନେ ବଡ଼ଦାଣ୍ଡରେ ଭିକମାଗନ୍ତି, ସେମାନେ ଭିକମଗାପରେ ଖରାବେଳେ ନରେନ୍ଦ୍ର ପାଣିରେ ଡେଇଁ ପହଁରି ଜୀବନକୁ ଯେପରି ଉପଭୋଗ କରନ୍ତି, ତାହା ମୁଁ ନିୟମିତ ଲକ୍ଷ୍ୟ କରୁଥିଲି । ମୁଁ ଯେପରି ଅନ୍ୟପିଲାମାନଙ୍କୁ ଜାଣିଥିଲି, ଅନ୍ୟମାନେ ମୋତେ ସେହିପରି ଚିହ୍ନିଥିଲେ ନିଶ୍ଚୟ । ମୋଟାମୋଟି ମୋତେ ଅନେକେ ଭଲ ପାଉଥିଲେ- ବିଶେଷତଃ ନନାଙ୍କ ସାଙ୍ଗମାନେ । ଯେ କୌଣସି ପଙ୍ଗତ ବା ଭୋଜିରେ ନନା ତ ମୋତେ ପ୍ରାୟ ସାଙ୍ଗରେ ନେଉଥିଲେ; ନନେଇଥିଲେ ସେମାନେ 'ପୁଅ କାହିଁକି ସାଙ୍ଗରେ ଆସିନାହିଁ' ବୋଲି ପଚାରୁଥିଲେ । ଭଲ ପାଠ ପଢୁଥିବାରୁ ମୋର ସେତେବେଳେ ସୁନାମ ଥିଲା ଓ ମୋର ଭବିଷ୍ୟତ ସମ୍ପର୍କରେ ଅନେକେ ଆଶାବାଦୀ ଥିଲେ ।

ଭଲ ପାଠ ନପଢ଼ିଲେ ମୋର ଭବିଷ୍ୟତ ଯେ ଅନ୍ଧାର, ଏ ବିଷୟରେ ମୋ ଜେଜେନାନୀ ମୋତେ ମଝିରେ ମଝିରେ ତାଗିଦ୍ କରିଦେଉଥିଲା, 'କିଛି ନ ହେଲେ ଗୋପୀ ତା ନନାଙ୍କ ବୃତ୍ତି କରିବ, ତୁ କ'ଣ କରିବୁ ?' ସେ କହୁଥିଲା । ଗୋପୀ ବାଞ୍ଛାନିଧି ଶତପଥିଙ୍କ ପୁଅ । ଜେଜେନାନୀର କହିବାର ଅର୍ଥ ଥିଲା, ଗୋପୀ ନରେନ୍ଦ୍ରକୋଣ ଜଗନ୍ନାଥଙ୍କ ମୂର୍ତ୍ତି ପାଖରେ ବସିଲେ ଯାତ୍ରୀମାନଙ୍କଠାରୁ ପଇସା ଅସୁଲ କରି ଚଳିବ, କିନ୍ତୁ ପାଠ ପଢ଼ି ଚାକିରୀ ନକଲେ ମୁଁ ଖାଇବାକୁ ପାଇବି ନାହିଁ ।

ନରେନ୍ଦ୍ର କୋଣର ଅନୁଭୂତିରୁ ମୁଁ ଜାଣେ, ଅତି ସାଧାରଣ ଅଶିକ୍ଷିତ ଗରିବ ଲୋକ ଓ ତଥାକଥିତ ଶିକ୍ଷିତ ଲୋକଙ୍କ ମଧ୍ୟରେ ବାସ୍ତବିକ ଖୁବ୍ ପ୍ରଭେଦ ନାହିଁ। ମୋଟାମୋଟି ସେମାନଙ୍କ ସୁଖଦୁଃଖ, ହସଲୁହର ପରିମାଣ ସମାନ । ଏପରିକି ଜୀବନକୁ ସେମାନେ ପ୍ରାୟ ସମାନଭାବରେ ବୁଝିଥାନ୍ତି । ଧନୀ କ୍ଷମତାଶାଳୀମାନେ ଜୀବନକୁ ଯେପରି ଉପଭୋଗ କରନ୍ତି, ନରେନ୍ଦ୍ରକୋଣର ଭିକାରୀ ପିଲାମାନେ ତା'ଠାରୁ କମ୍ ଉପଭୋଗ କରନ୍ତି ବୋଲି ମୋର ମନେହୁଏ ନାହିଁ ।



# ଯୁଗଜ୍ୟୋତି

ପୁରୀ ଜିଲ୍ଲା ସ୍କୁଲରେ ନବମ-ଦଶମ ଶ୍ରେଣୀରେ ପଢୁଥିବା ସମୟରେ ଆମେ କେତେଜଣ ଛାତ୍ର ଗୋଟିଏ ସାହିତ୍ୟ ଅନୁଷ୍ଠାନ ଗଢ଼ିଲୁ । ନାମ ଦେଲୁ-ସବୁଜ ସାହିତ୍ୟ ସଂସଦ ।ତାହାପକ୍ଷରୁ ପତ୍ରିକାଟିଏ ପ୍ରକାଶ କରିବାକୁ ସ୍ଥିର ହେଲା । ତାହାର ନାମକରଣ ହେଲା 'ଯୁଗଜ୍ୟୋତି' । ଏହି ଅନୁଷ୍ଠାନରେ ଯେଉଁ ଅଳ୍ପ କେତେଜଣ ବନ୍ଧୁ ସାମିଲ ହୋଇଥିଲେ, ସେମାନେ ହେଲେ-ଶରତ ଚନ୍ଦ୍ର ଦାଶ (ବର୍ତ୍ତମାନ ଆମେରିକାରେ ଅବସ୍ଥାପିତ ଡାକ୍ତର), ଅମ୍ବିକା ପ୍ରସାଦ ମହାନ୍ତି (ଉତ୍କଳ ବିଶ୍ୱବିଦ୍ୟାଳୟର ଆଇନ୍ କଲେଜର ଅଧ୍ୟାପକ), ଅମ୍ବିକା ପ୍ରସାଦ ପରିଡ଼ା (ଓଡ଼ିଶା ସରକାରଙ୍କ ଅଧୀନରେ କାର୍ଯ୍ୟରତ ଡାକ୍ତର) ଓ ଅନନ୍ତ ଚରଣ ସେନାପତି (ଇଞ୍ଜିନିୟର) । ମୁଁ ଥିଲି 'ଯୁଗଜ୍ୟୋତି'ର ସଂପାଦକ ଓ ମୋଟାମୋଟି ଏହି ଅନୁଷ୍ଠାନ ଓ ପତ୍ରିକା ଥିଲା ମୋର ପରିକଳ୍ପନା ।

ହାତ ଲେଖା ଓ ଛପା ପତ୍ରପତ୍ରିକା ପ୍ରକାଶନ କରିବା ପାଇଁ ସେତେବେଳେ ସ୍କୁଲ କଲେଜରେ ଅନେକଙ୍କର ଝୁଙ୍କ ଥିଲା । ଆମ ଘରେ ମୋର ସଂପର୍କୀୟ ଭାଇ-ଭଉଣୀ ଓ ମୁଁ ଗୋଟିଏ ହାତଲେଖା ପତ୍ରିକା ପ୍ରକାଶ କରୁଥିଲୁ- 'ସଂଚୟନ' । ଏହାର ସଂପାଦକ ଥିଲେ ଚନ୍ଦ୍ର ଶେଖର ମିଶ୍ର (ବର୍ତ୍ତମାନ ଡେପୁଟି ଡିରେକ୍ଟର, ଟ୍ରେଜେରୀ) । ସେ ମୋ ଠାରୁ ଚାରିବର୍ଷ ଉପରେ ପୁରୀ ଜିଲ୍ଲା ସ୍କୁଲରେ ପଢୁଥିଲେ । ତାଙ୍କର ସୁନ୍ଦର ହସ୍ତାକ୍ଷର ତାଙ୍କୁ ସମ୍ପାଦକର ଦାୟିତ୍ୱ ପ୍ରଦାନ କରିଥିଲା । 'ସଂଚୟନ' ପତ୍ରିକାଟିର ଆଠଟି ସଂଖ୍ୟା ପ୍ରକାଶିତ ହୋଇଥିଲା ।

ସେ ମୋର ବଡ଼ଦେଇପୁଅ ଭାଇ । ସେ ଅର୍ଥାତ୍ ଶିଖୁ ଭାଇନା ଗଳ୍ପ, କବିତା, ପ୍ରବନ୍ଧ ସବୁ ନିଜ ହାତରେ ନକଲ ଗୋଟେ କରି ଲେଖୁଥିଲେ । ଆମେମାନେ ମଧ୍ୟ ତାଙ୍କୁ ସାହାଯ୍ୟ କରୁଥିଲୁ ଓ ଚିତ୍ରସବୁ ଆଙ୍କୁଥିଲୁ । ଏହି ପତ୍ରିକାର ପାଠକ ସଂଖ୍ୟା ପାଞ୍ଚ ବା

ଛଅ । ମୋର ସୌଭାଗ୍ୟ, ଏହି ପତ୍ରିକାର ସଂଖ୍ୟା ସବୁ ମୋ ନିକଟରେ ଗଚ୍ଛିତ ଅଛି । ସ୍କୁଲ ପିଲାମାନେ ଏକାଠି ହୋଇ ହାତଲେଖା ପତ୍ରିକା ପ୍ରକାଶ କରିବାରେ ସେତେବେଳେ କିଛି ପ୍ରତିଯୋଗିତା ଥିଲା ହୁଏତ । ସୁଧାଂଶୁ ଭୂଷଣ ମିଶ୍ର (ଓଡ଼ିଶା ସରକାରଙ୍କ ଚିଫ୍ ସେକ୍ରେଟାରୀ) ଗୋଟିଏ ହାତଲେଖା ପତ୍ରିକା ପ୍ରକାଶ କରୁଥିଲେ । ତାହାର ନାମ ମୋର ମନେନାହିଁ । ତାଙ୍କର ମନେ ଥାଇପାରେ । 'ଉଦୟନ' ନାମରେ ଆଉ ଗୋଟିଏ ହାତଲେଖା ପତ୍ରିକାର ଗୋଟିଏ ସଂଖ୍ୟା ମଧ୍ୟ ଆମେ କେତେଜଣ ଅଷ୍ଟମ ଶ୍ରେଣୀରେ ପଢୁଥିବା ସମୟରେ ପ୍ରକାଶ କଲୁ । ଆମ ସହିତ ପ୍ରତିଯୋଗିତା କଲାଭଳି କେତେଜଣ ସହପାଠୀ ପ୍ରକାଶ କରିଥିଲେ 'ଅରୁଣ' । ମୁଁ କଲେଜକୁ ଆସିବା ପରେ ପୁରୀର ସାଂସ୍କୃତିକ ଅନୁଷ୍ଠାନ 'ଦି ଶିକରସ୍' ପ୍ରକାଶ କରିଥିଲେ 'ସନ୍ଧାନୀ' । ଏହି ପତ୍ରିକାର ସଂପାଦକ ଥିଲେ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ବର୍ତ୍ତମାନ କଣ୍ଟିଲୋ ମହାବିଦ୍ୟାଳୟର ଅଧ୍ୟକ୍ଷ) । 'ଦି ଶିକରସ୍' ସହିତ ମୁଁ ସଂପୃକ୍ତ ଥିଲି ଓ 'ସନ୍ଧାନୀ'ରେ କବିତାମାନ ଲେଖୁଥିଲି । ଏଥିରେ ଓଡ଼ିଆ ସହିତ ହିନ୍ଦୀରେ ମଧ୍ୟ କବିତାମାନ ପ୍ରକାଶିତ ହୋଇଥିଲା । କାରଣ ଉତ୍କଳ ହିନ୍ଦୀ ବିଦ୍ୟାଳୟର ଦୁଇଜଣ ଶିକ୍ଷକ ଏ ପତ୍ରିକା ସହିତ ସଂପୃକ୍ତ ଥିଲେ ଏବଂ ପ୍ରଫୁଲ୍ଲ ବାବୁ ନିଜେ ମଧ୍ୟ କିଛି ମାସ ହିନ୍ଦୀ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ ।

'ଯୁଗଜ୍ୟୋତି'ର ଦୁଇଟି ସଂଖ୍ୟା ମାତ୍ର ପ୍ରକାଶିତ ହୋଇଥିଲା । ପ୍ରଥମ ସଂଖ୍ୟାଟି ଥିଲା ଋରିପୃଷ୍ଠା; ପ୍ରକାଶ କାଳ: ଫେବୃୟାରୀ, ୧୯୫୮ । ଦ୍ୱିତୀୟ ସଂଖ୍ୟା ଅଠର ପୃଷ୍ଠା; ପ୍ରକାଶକାଳ: ଏପ୍ରିଲ ୧୯୫୮ । ପ୍ରଥମ ସଂଖ୍ୟାରେ ଗୌରୀଶଙ୍କର ଓ ଦ୍ୱିତୀୟ ସଂଖ୍ୟାରେ କୃପାସିନ୍ଧୁ ମିଶ୍ରଙ୍କ ଉପରେ ସ୍ୱତନ୍ତ୍ର ଲେଖାମାନ ଥିଲା । 'ନବଜୀବନ'ର ସଂପାଦକ ଚିନ୍ତାମଣି ମିଶ୍ର ଓ କବି ବ୍ରଜନାଥ ରଥଙ୍କର ଆଲୋଚନା ଓ କବିତା ଏହି ସଂଖ୍ୟାମାନଙ୍କରେ ସ୍ଥାନିତ ହୋଇଥିଲା । ସେତେବେଳକୁ ଏମାନଙ୍କ ସହିତ ମୋର ବ୍ୟକ୍ତିଗତ ସଂପର୍କ ପ୍ରତିଷ୍ଠିତ ହୋଇସାରିଥାଏ ।

'ଯୁଗଜ୍ୟୋତି' ଆମେ ମୁଦ୍ରଣ କରିଥିଲୁ କଟକ ବାଙ୍ଗସାହୀର କୌଣସି ଏକ ପ୍ରେସରେ । ବନ୍ଧୁ ଅମ୍ବିକା ପ୍ରସାଦ ପରିଡ଼ାଙ୍କ ଘର ସେହି ସାହୀରେ । ତାଙ୍କରି ପ୍ରସ୍ତାବ କ୍ରମେ ପ୍ରେସଟି ଚିହ୍ନିତ କରାଯାଇଥିଲା । ତା'ଛଡ଼ା କଟକ ଯାଇ ବଡ଼ ବଡ଼ ଲେଖକମାନଙ୍କୁ ଭେଟି ସେମାନଙ୍କ ଲେଖା ସଂଗ୍ରହ କରିବା ମଧ୍ୟ ଥିଲା କଟକରୁ ପତ୍ରିକାଟି ପ୍ରକାଶ କରିବାର ଉଦ୍ଦେଶ୍ୟ । ଦ୍ୱିତୀୟ ସଂଖ୍ୟାର ଲେଖା ସଂଗ୍ରହ କରିବା ପାଇଁ ମୁଁ, ଅନନ୍ତ ଚରଣ ସେନାପତି ଓ ଅମ୍ବିକା ପ୍ରସାଦ ପରିଡ଼ା କଟକରେ ପହଞ୍ଚିଥିଲୁ । ସେତେବେଳେ ପ୍ରଚଣ୍ଡ ଗ୍ରୀଷ୍ମଋତୁ । ଏପରି ସମୟରେ ପୁରୀ ସମୁଦ୍ରକୂଳରୁ ଯାଇ ମଧ୍ୟାହ୍ନରେ କଟକର

ବଜାରମାନଙ୍କରେ ବୁଲିବା ଏକ ଦାରୁଣ ଅନୁଭୂତି । କଟକର ରାସ୍ତାଘାଟ ମଧ୍ୟ ଆମକୁ ଠିକ୍ ଜଣାନଥାଏ । ଆର୍ଥିକ ଅସ୍ୱଚ୍ଛଳତା ହେତୁ ପାଦରେ ଚାଲି ଚାଲି ଗଲୁ ହରିପୁର ରୋଡ୍ ଗୋଦାବରୀଶ ମହାପାତ୍ରଙ୍କ ନିଆଁଖୁଣ୍ଟା 'ଅଫିସ'- ଗୋଦାବରୀଶ ସେତେବେଳେ ମୋର ଅତିପ୍ରିୟ ଲେଖକ ଓ କବି । ତାଙ୍କ ସଂପାଦିତ 'ଟୁଆଁ ଟୁଇଁ' ରେ ମୋର କେତୋଟି ଗପ ଓ କବିତା ପ୍ରକାଶିତ ହୋଇସାରିଥାଏ ଓ ଆମର ଚିଠିପତ୍ର ମଧ୍ୟ ବିନିମୟ ହୋଇସାରିଥାଏ । 'ନିଆଁଖୁଣ୍ଟା' ଅଫିସରେ କିଶୋର ବାବୁଙ୍କୁ ସାକ୍ଷତ କରି ଗୋଦାବରୀଶ ମହାପାତ୍ରଙ୍କୁ ଭେଟିବାକୁ ଅନୁରୋଧ କରନ୍ତେ ସେ ଭିତରକୁ ଗଲେ ଓ ଅଳ୍ପ ସମୟ ପରେ ଆମ ସମ୍ମୁଖରେ ଉଭା ହେଲେ ସ୍ୱୟଂ ଗୋଦାବରୀଶ ମହାପାତ୍ର । କେବଳ ଧୋତି ଖଣ୍ଡିଏ ପିନ୍ଧିଥାନ୍ତି । କଟକରେ ରହୁଥିବା ଲୋକଙ୍କୁ ମଧ୍ୟ ଗ୍ରୀଷ୍ମଋତୁ ବାଧୁଥିବାର ପ୍ରମାଣ ।

ଉଦ୍ଦେଶ୍ୟ ଜଣାଇଲୁ । 'ଯୁଗଜ୍ୟୋତି' ପାଇଁ ସେ ଲେଖାଦେଇ ପାରିବେ ନାହିଁ ବୋଲି କହିଲେ । ତାହା ସହିତ ଉପଦେଶ ଦେଲେ-''ତୁମର ମାଟ୍ରିକ ପରୀକ୍ଷା ଆଉ ବେଶୀଦିନ ନାହିଁ । ତେଣୁ ବର୍ତ୍ତମାନ ପତ୍ରିକା ପ୍ରକାଶନ ଇତ୍ୟାଦିରେ ମନ ନ ଦେଇ ପଢ଼ାପଢ଼ିରେ ନିଜକୁ ନିୟୋଜିତ କର ।''

ଆମେ ତାଙ୍କ ଉପଦେଶ ମନସ୍ଥ କରି ଫେରିଲୁ । କିନ୍ତୁ ମାଟ୍ରିକ ପରୀକ୍ଷା ସଂପର୍କରେ ମୁଁ ଆଦୌ ଚିନ୍ତିତ ନଥିଲି । ପରୀକ୍ଷା ଅତିକ୍ରମ କରିବା ଗୋଡ଼ିଟାଏ ଫିଙ୍ଗିବା ପରି ସହଜ କାର୍ଯ୍ୟ ବୋଲି ମୁଁ ଧରି ନେଇଥିଲି । ସାହିତ୍ୟରେ କିଛି ଚମତ୍କାରିତା ପ୍ରଦର୍ଶନ କରିବା ମୋର ଥିଲା ଚରମ ଅଭିଳାଷ ।

ଚିନ୍ତାମଣି ମିଶ୍ରେ କିନ୍ତୁ ଆମକୁ ଦେଖି ଆନନ୍ଦିତ ହେଲେ ଓ ନିଜ ଅଫିସ ରୁମ୍‌ରେ ବସାଇ କିଛି ଆଲୋଚନା କଲେ । କହିଲେ, ''ଆସନ୍ତାକାଲି ଆସି ଲେଖାଟି ନେଇଯିବ ।'' ଆମେ ତା'ପରଦିନ ପହଞ୍ଚିଲା ବେଳକୁ ସେ ଲେଖାଟି ଲେଖି ରଖିଥିଲେ ତାଙ୍କର ସୁନ୍ଦର ହସ୍ତାକ୍ଷରରେ । ଆମକୁ ଲେଖାଟି ପଢ଼ି ଶୁଣାଇଲେ । ଆମେ ଉଲ୍ଲସିତ ହେଲୁ ଖୁବ୍ । ତାଙ୍କ ସହିତ ମଧ୍ୟ ମୋର ପୂର୍ବରୁ ପରିଚୟ ହୋଇସାରିଥିଲା । କାରଣ 'ନବଜୀବନ'ରେ କିଛି କବିତା ସେତେବେଳକୁ ମୋର ପ୍ରକାଶିତ ହୋଇସାରିଥିଲା ।

ଚିନ୍ତାମଣି ମିଶ୍ର ଲେଖିଥିଲେ କୃପାସିନ୍ଧୁ ମିଶ୍ରଙ୍କ ସମ୍ବନ୍ଧରେ । ତାଙ୍କ ଲେଖାର କେତୋଟି ପଂକ୍ତି ଥିଲାଏହିପରି:

''ମହାନ୍ ବ୍ୟକ୍ତିଙ୍କର ସ୍ମୃତି ତାଙ୍କ ପ୍ରତି ମହତ୍ତ୍ୱର ଅନୁକରଣରେ ପୂଜିତ ହୁଏ । ବର୍ତ୍ତମାନ ଜାତିର ଜୀବନରେ ଭୋଗର ଯେଉଁ ଖଣ୍ଡିଆଭୂତ ଉଠିଛି, ସେଥିରେ ନିକଟରେ

ଆମମାନଙ୍କୁ ଛାଡ଼ି ଯାଇଥିବା ମହାତ୍ମା ଗାନ୍ଧୀଙ୍କର ଆଦର୍ଶ ମଧ୍ୟ ବିପର୍ଯ୍ୟସ୍ତ ହୋଇଗଲାଣି । ପଣ୍ଡିତ ଗୋପବନ୍ଧୁ ମହାତ୍ମାଜୀଙ୍କ ୨୦ ବର୍ଷ ଆଗରୁ ଯାଇଛନ୍ତି; କୃପାସିନ୍ଧୁ ବାବୁ ତାଙ୍କ ଆଗରୁ ଯାଇଥିଲେ । ଏପରି ସ୍ଥଳେ ଇଟାର ସମାଧି ବ୍ୟତୀତ ତାଙ୍କ ସ୍ମୃତିରକ୍ଷା କରିବାକୁ ଆଉ କ'ଣ ଯୁଗପୋଯୋଗୀ ହେବ ?

'ଆଜି କିନ୍ତୁ ଶ୍ରୀମାନ ଗଣେଶ୍ୱର ମିଶ୍ର ଓ ତାଙ୍କ ସାଥୀମାନଙ୍କ ସହିତ କଥାବାର୍ତ୍ତା ହୋଇ ମନରେ କ୍ଷୀଣ ଆଶା ହେଉଛି । ବୋଧହୁଏ ଆଜିର ଏ ବ୍ୟମୋହ ବେଶୀଦିନ ସ୍ଥାୟୀ ହେବନାହିଁ । ପୁଣି ଏ ଦେଶର ପାଣି ପବନର ଉପଯୋଗୀ ତ୍ୟାଗପୂତ ନିଷ୍ଠା ଓ ଉତ୍ସାହର ଉଦ୍ରେକ ହେବ । କୃପାସିନ୍ଧୁଙ୍କର ନାମ ସେ ତାରାକୁ ମୃତ ସଞ୍ଜିବନୀ ମନ୍ତ୍ର ଦେବାକୁ ଯୋଗ୍ୟ । ବଡ଼ ଆଶାର କଥା, ପୁରୀର ଛାତ୍ରମାନେ ସେମାନଙ୍କର ନୂତନ ପତ୍ରକୁ ସେହି ମହାତ୍ମାଙ୍କ ନାମ ଧରି ଆରମ୍ଭ କରୁଛନ୍ତି ।''

ଚିନ୍ତାମଣି ମିଶ୍ରଙ୍କ ପରେ ଗଲୁ ବିଚ୍ଛନ୍ଦ ଚରଣ ପଟ୍ଟନାୟକଙ୍କ ଘରକୁ । ପଚାରି ପଚାରି ତାଙ୍କ ଘର ଠାବ କଲୁ । ତାଙ୍କ ସହିତ ଆମର ପରିଚୟ ନଥିଲା ଆଗରୁ । କିନ୍ତୁ 'ଉତ୍କଳ ପ୍ରସଙ୍ଗ'ରେ ତାଙ୍କର କବିତା ସବୁ ପଢ଼ିଥିଲୁ । ବିଶେଷତଃ ଗୋପବନ୍ଧୁ ଦାସଙ୍କ ସଂପର୍କରେ ଲିଖିତ ତାଙ୍କର ଗୋଟିଏ କବିତାର ଦୁଇଟି ଧାଡ଼ି ସବୁବେଳେ ମୋ ମନରେ ଲହଡ଼ି ଭାଙ୍ଗୁଥିଲେ :

ମଣିଷ ପରି ମଣିଷଟାଏ ପଡ଼ିଲା ଦେଖୁ ଖସିରେ
କିଏ ଭାଳିବ ଦେଶର କଥା ନିଭୃତରେ ବସିରେ ।

ବିଚ୍ଛନ୍ଦ ଚରଣଙ୍କ ଉତ୍ସାହ ଚିନ୍ତାମଣି ମିଶ୍ରଙ୍କ ଉତ୍ସାହଠାରୁ ବଳିଗଲା । ସେ ଯେମିତି ତାଙ୍କ ବାରଣ୍ଡାରେ ଆରାମ ଚେୟାରରେ ଆମକୁ ଅପେକ୍ଷା କରି ବସିଥିଲେ । ସମୟ ସନ୍ଧ୍ୟା । ସେ ଆମ ଆଗରେ ପ୍ରଗଳ୍ଭ ପରି ଗପି ଚାଲିଲେ ପ୍ରାଚୀନ ଓଡ଼ିଆ କାବ୍ୟ-କବିତା ଓ ତାହାର ସଂରକ୍ଷଣ ବ୍ୟବସ୍ଥା । ଆମ ପ୍ରତି ବ୍ୟବହାର କଲେ-ଜଣେ ପୁରୁଣା ଶିକ୍ଷକ ଛାତ୍ରମାନଙ୍କ ପ୍ରତି ଯେପରି କରିଥାନ୍ତି ।

ସାହିତ୍ୟ ଅନୁଷ୍ଠାନଟିଏ ଗଢ଼ି ତାହାର ନାମ 'ସବୁଜ ସାହିତ୍ୟ ସଂସଦ' ଦେବାରେ ସେ ଘୋର ଆପତ୍ତି କଲେ । ଅତୀତରେ ଏହି ନାମରେ ଅନୁଷ୍ଠାନଟିଏ ଗଢ଼ି ବଙ୍ଗଳା ସାହିତ୍ୟ ସ୍ରୋତରେ ଓଡ଼ିଆ ସାହିତ୍ୟକୁ ଭସାଇ ଦେବାପାଇଁ ଉଦ୍ୟମ ହୋଇଥିଲା । ପୁଣି ସେଇ ନାମ କାହିଁକି ?

ବିଚ୍ଛନ୍ଦ ଚରଣଙ୍କ ସହିତ ଯୁକ୍ତିତର୍କ ବା ଆଲୋଚନା କରିବାର ସାହସ ବା ସାମର୍ଥ୍ୟ ଆମର ନଥିଲା । ତାଙ୍କର ଆନ୍ତରିକତା ଓ ସ୍ନେହ କିନ୍ତୁ ଅଭିଭୂତ କରିଥିଲା ଆମକୁ ।

ଏହାପରେ ଦିନେ ପୋଷ୍ଟକାର୍ଡଟିଏ ଆସି ପହଞ୍ଚିଲା ଆମ ପୁରୀ ପଥୁରିଆ ସାହୀ ଘରେ । ଲେଖିଥିଲେ ବିଚ୍ଛନ୍ଦ ଚରଣ ପଟ୍ଟନାୟକ ।

ଜୟ ମା କଳିଙ୍ଗ ଭାରତୀ
କଟକ-୨, ୮।୪।୫୮

ପରମ କଲ୍ୟାଣୀୟ ଶ୍ରୀମାନ ଗଣେଶ୍ୱର-

ତୁମ୍ଭର ପତ୍ର ପାଇ ଯତ୍ପରୋନାସ୍ତି ଆପ୍ୟାୟିତ ହୋଇଛି । ତୁମ୍ଭ ସାଙ୍ଗମାନଙ୍କ ନିକଟକୁ ଶୀଘ୍ର ପତ୍ର ଲେଖିବି । ସ୍ୱତଃ ପ୍ରେରିତ ହୋଇ ତୁମ୍ଭେମାନେ ଜାତୀୟ ସାହିତ୍ୟ ପ୍ରତି କର୍ତ୍ତବ୍ୟ କରି ଚାଲିଅଛ । ଏହା ଦେଖି ମୁଁ ବହୁ ଆଶାୟୀ ହୋଇଅଛି । ଏତିକି ମନେରଖ, ''ସଂସାରେ ସଂପଦ ଯାକରେ ସାର । ସାରସ୍ୱତ ପରମ୍ପରା ଜାତିର ।'' ସାହିତ୍ୟ ସୃଷ୍ଟି କଲାବେଳେ ସାରସ୍ୱତ ଐତିହ୍ୟକୁ ବ୍ୟାହତ କଲାଭଳି କିଛି କରିବ ନାହିଁ । ଏତିକି ମାତ୍ର ଲକ୍ଷ୍ୟ ଗ୍ରହଣ କଲେ ତୁମ୍ଭମାନଙ୍କ ରଚନାର ରୀତି ନିଶ୍ଚୟ ବଦଳିଯିବ । ଏ କୋମଳ ବୟସରେ ତୁମ୍ଭମାନଙ୍କ ମନ ଏକାନ୍ତ ପ୍ରଭାବୋନ୍ମୁଖ । ବ୍ରିଟିଶ ପୂର୍ବ ଯୁଗର ଯେତେ ଗ୍ରନ୍ଥ ପଢ଼ିପାରିବ ତାହା ସେତେ ସହାୟକ ହେବ । ଆମର ସବୁଜ ସାହିତ୍ୟ ସମିତି ନାମରେ ଗୋଟିଏ ସଂସ୍ଥା ଥିଲା ସେମାନେ ବଙ୍ଗାନୁକରଣରେ ଓଡ଼ିଶାକୁ ଭସାଇଦେଇ ଯାଇଛନ୍ତି । ତୁମ୍ଭେମାନେ ସବୁଜ ବୋଲାଉଛ କାହିଁକି ? ଅକାରଣରେ ସେମାନଙ୍କର କଳଙ୍କ ତୁମ୍ଭମାନଙ୍କୁ ଛୁଇଁବ । ତୁମ୍ଭ ଅନୁଷ୍ଠାନର ନାମ ବଦଳାଇଦେଲେ ଏ ସମ୍ଭାବନା ରହିବ ନାହିଁ । ମୋର ଏ ସୂଚନା ମାତ୍ର । ତୁମ୍ଭମାନଙ୍କର ବିଚାର୍ଯ୍ୟ ।

କଳିଙ୍ଗଭାରତୀ ଭଞ୍ଜଜୟନ୍ତୀ ଆସନ୍ତା ମାସ ୧୬ ତାରିଖରୁ ୨୨ ତାରିଖ ପର୍ଯ୍ୟନ୍ତ ଅନୁଷ୍ଠିତ ହେବ । ଏ ଉତ୍ସବ ପାଇଁ କିଛି କରିବାକୁ ବା ଏ ଉତ୍ସବରେ ଉପସ୍ଥିତ ହେବାକୁ ଯତ୍ନ କରିବ ।

ମୁଁ ତୁମ୍ଭମାନଙ୍କୁ ଆଗ ଚିଠି ଦେବାକୁ ବିଚାରିଥିଲି । ତୁମ୍ଭେ ମୋତେ ଟପି ଯାଇଛ । ଏ ପରିଚୟ ମୋତେ ସୁଖୀ କରିଛି ମାତ୍ର ।

ତୁମ୍ଭେମାନେ ସାହିତ୍ୟାଲୋଚନା ପାଇଁ ସମବେତ ହେଉଥିବାର ଦୃଶ୍ୟ କଳ୍ପନା ଚକ୍ଷୁରେ ଦେଖି ମୁଁ ସଂପ୍ରୀତ ହେଉଅଛି । ମା କଳିଙ୍ଗ ଭାରତୀ ତୁମ୍ଭମାନଙ୍କୁ ଯଶସ୍ୱୀ ଓ ଚିରଞ୍ଜୀବୀ କରନ୍ତୁ । ପତ୍ର ଦେଉଥିବ ।

ଇତି

ତୁମ୍ଭମାନଙ୍କର ଶୁଭାନୁଧ୍ୟାୟୀ
ବିଚ୍ଛନ୍ଦ ଚରଣ ପଟ୍ଟନାୟକ

ଠିକଣା :

ଶ୍ରୀମାନ୍ ଗଣେଶ୍ୱର ମିଶ୍ର, ଛାତ୍ର, ଦଶମ ଶ୍ରେଣୀ

ପଥୁରିଆ ସାହୀ, ପୁରୀ

ମାତ୍ର ଦୁଇଟି ସଂଖ୍ୟା ପରେ 'ଯୁଗଜ୍ୟୋତି' ବନ୍ଦ ହୋଇଗଲା । କହିବା ଅନାବଶ୍ୟକ- ଆମେ ହାତରୁ କିଛି ପଇସା ଖର୍ଚ୍ଚ କରି ପତ୍ରିକାଟି ପ୍ରକାଶ କରିଥିଲୁ । ସେପରି କେତେଦିନ ବା କରାଯାଇ ପାରିଥାନ୍ତା ?

ହାତଲେଖା ବା କ୍ଷୁଦ୍ର ଛପା ପତ୍ରପତ୍ରିକା ଯେ ସାହିତ୍ୟର ସାମୂହିକ ବିକାଶ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ନୁହନ୍ତି, ସେପରି କହିହେବ ନାହିଁ । 'ସଂଚୟନ' ବା 'ଯୁଗଜ୍ୟୋତି' ପ୍ରକାଶରେ ଯେଉଁ ଆନନ୍ଦ ଓ ଉତ୍ତେଜନା ମୁଁ ଅନୁଭବ କରିଥିଲି, ପରବର୍ତ୍ତୀ ସମୟରେ ସେପରି କ୍ୱଚିତ୍ ଘଟିଛି । ଏଇ ନିରୋଳା ଆନନ୍ଦଠାରୁ କ'ଣ ବା ଅଧିକ ମୂଲ୍ୟବାନ ସାହିତ୍ୟ ରଚନା, ସଂପାଦନା ବା ସଂଗଠନରେ ?

'ଯୁଗଜ୍ୟୋତି' ବନ୍ଦ ହୋଇଯିବାର ତିନି ଚାରି ବର୍ଷ ପରେ ହଠାତ୍ ଆମ ଘର ସମ୍ମୁଖରେ ଦିନେ ପହଞ୍ଚିଲେ ଜଣେ ଧୋତି-ପଞ୍ଜାବୀ ପରିହିତ ବୃଦ୍ଧ । ଅଭିଜାତ ଓ ଉଜ୍ଜ୍ୱଳ । ମୁଁ ତାଙ୍କୁ ଆଗରୁ ଭେଟି ନଥିଲି କେବେ । ସେ କିନ୍ତୁ ଆମ ଘର ଖୋଜି ଖୋଜି ମୋ ପାଖକୁ ହିଁ ଆସିଥିଲେ ।

ସେ ଆସିଥିଲେ 'ଯୁଗଜ୍ୟୋତି' ପତ୍ରିକାଟିର ଅନୁସନ୍ଧାନରେ । କାରଣ ତାହାର ଗୋଟିଏ ସଂଖ୍ୟାରେ କୃପାସିନ୍ଧୁ ମିଶ୍ରଙ୍କ ସମ୍ବନ୍ଧରେ ଆଲୋଚନାଟିଏ ପ୍ରକାଶିତ ହୋଇଥିବା ସେ ଶୁଣିଥିଲେ । ପତ୍ରିକାଟି ଅବଶ୍ୟ ସେ ସଂଗ୍ରହ କରିନେଲେ ।

ସେ ମହାଶୟ ଥିଲେ ଚିନ୍ତାମଣି ଦାଶ । ସେତେବେଳେ ଖଲ୍ଲିକୋଟ କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ । ସତ୍ୟବାଦୀ ଯୁଗର ସାହିତ୍ୟରେ ତାଙ୍କର ଗବେଷଣା ପାଇଁ ସେ ପରିଚିତ ସାହିତ୍ୟିକ ମହଲରେ । 'ସମାଜ'ର ପ୍ରଥମ ପୃଷ୍ଠାରେ ଦିନ ପରେ ଦିନ ସେତେବେଳେ ବିଜ୍ଞାପିତ ହେଉଥିଲା ତାଙ୍କର ଗୋଟିଏ ଗ୍ରନ୍ଥ-'ସତ୍ୟବାଦୀରେ ସାତବର୍ଷ ।'

ଗତବର୍ଷ ପୁଣି ଚିଠିଟିଏ ପାଇଲି ଜଣେ ଓଡ଼ିଆ ଅଧ୍ୟାପକଙ୍କଠାରୁ । 'ଯୁଗଜ୍ୟୋତି'ର ଯେଉଁ ସଂଖ୍ୟାରେ କୃପାସିନ୍ଧୁ ମିଶ୍ରଙ୍କର ସଂପର୍କରେ ଲେଖାଟିଏ ପ୍ରକାଶ ପାଇଛି, ସେ ସଂଖ୍ୟାଟି ସେ ଆବଶ୍ୟକ କରନ୍ତି । 'ଯୁଗଜ୍ୟୋତି'ର ସନ୍ଧାନ ସେ ପାଇଛନ୍ତି କବି ଶ୍ରୀ ବ୍ରଜନାଥ ରଥଙ୍କ ଠାରୁ । ଅଠେଇଶି ବର୍ଷ ତଳର ନିହାତି କ୍ଷୁଦ୍ର ପତ୍ରିକାଟି ତଥାପି ଯେ ବିସ୍ମୃତି ଅନ୍ଧାରରେ ସଂପୂର୍ଣ୍ଣ ହଜି ଯାଇନାହିଁ, ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ଅଛି ଯଥେଷ୍ଟ ।



# ରାଜସ୍ଥାନ କଲେଜ, ଗିରିଜାଶଙ୍କର ରାୟ ଓ ଡକ୍ଟର ହୁଦା

ରାଜସ୍ଥାନ କଲେଜରେ ମୁଁ ଅଧ୍ୟାପନା କରିଥିଲି ପ୍ରାୟ ଛଅ ମାସ-୧୯୬୬ ଜୁଲାଇରୁ ଡିସେମ୍ବର ଯାଏଁ । କଲେଜଟି ସେଇବର୍ଷ ଆରମ୍ଭ ହୋଇଥାଏ ।

ମୁଁ ଥାଏ ଏକମାତ୍ର ଇଂରାଜୀ ଅଧ୍ୟାପକ । କେବଳ ପ୍ରି-ୟୁନିଭରସିଟି କ୍ଲାସ୍ ଥାଏ ।

ରାଜସ୍ଥାନର କୌଣସି ଅଞ୍ଚଳରେ ନୁହେଁ, କଲେଜଟି ଚାଲିଥାଏ କଟକର ନିମଚୌଡ଼ିରେ- ମାରୱାଡ଼ି ବାଳିକା ହାଇସ୍କୁଲରେ । ସନ୍ଧ୍ୟାରେ କଲେଜ ହୁଏ । ବୋଧହୁଏ ଛଅ ଜଣ ଅଧ୍ୟାପକ ନିଯୁକ୍ତ ହୋଇଥାନ୍ତି । ଅର୍ଥନୀତିରେ ସଞ୍ଜୀବ ହୋତା, ରାଜନୀତି ବିଜ୍ଞାନରେ ସନ୍ତୋଷ କୁମାର ଦାଶ, ଓଡ଼ିଆରେ ବାଳକୃଷ୍ଣ ଶତପଥୀ, ଇତ୍ୟାଦି । ସୁପରିଚିତ ବ୍ୟବସାୟୀ ଗଜାନନ ଅଗ୍ରୱାଲ ଥା'ନ୍ତି କଲେଜର ପରିଚାଳନା ସମିତିର ସମ୍ପାଦକ । ସ୍ୱର୍ଗତଃ ସୁରଜମଲ୍ଲ ଶାହା ମଧ୍ୟ କଲେଜ ସହିତ ସମ୍ପୃକ୍ତ ଥା'ନ୍ତି । କଟକ ମାରୱାଡ଼ି ବ୍ୟବସାୟୀମାନେ କଲେଜଟି ଆରମ୍ଭ କରିଥାନ୍ତି ।

୧୯୬୬ରେ ଇଂରାଜୀ ଅଧ୍ୟାପକ ଚାକିରୀଟିଏ ମିଳିଯିବା ଅତି ସହଜ ଥିଲା । ମୁଁ ଏମ୍.ଏ. ପରୀକ୍ଷା ଦେଉଥିବା ସମୟରେ ପ୍ରାଇଭେଟ କଲେଜର ଏକାଧିକ ଅଧ୍ୟକ୍ଷ ମୁଁ ରହୁଥିବା ହଷ୍ଟେଲକୁ ଆସି ପରୀକ୍ଷାପରେ ତାଙ୍କ କଲେଜରେ ଯୋଗ ଦେବାପାଇଁ ମୋତେ ପ୍ରବର୍ତ୍ତାଇଥିଲେ । ପରୀକ୍ଷା ପରେ ପରେ ରେଜଲ୍ଟ ପ୍ରକାଶିତ ହେବା ପୂର୍ବରୁ ମୁଁ ନୟାଗଡ଼ କଲେଜରେ ସାତ ମାସ ଅଧ୍ୟାପନା କଲି । କିନ୍ତୁ କଟକରେ ରହିବାପାଇଁ ସେତେବେଳେ ମୋର ଥିଲା ପ୍ରଚଣ୍ଡ ମୋହ । ସେଇ କାରଣରୁ ନୂଆ ଆରମ୍ଭ ହୋଇଥିବା ରାଜସ୍ଥାନ କଲେଜରେ ଯୋଗଦେଲି । ସାକ୍ଷାତକାରରେ ମୋର ପ୍ରଫେସର ପ୍ରଫୁଲ୍ଲ କୁମାର ପତି ମୋତେ ଅଧ୍ୟାପକ ପଦପାଇଁ ମନୋନୀତ କରିଥିଲେ ।

ସେତେବେଳେ ମୁଁ ଅବିବାହିତ ଥିଲି ଓ ରହୁଥିଲି ଦୋଳମୁଣ୍ଡାଇର ହୋଟେଲ୍ ପ୍ଲାଜାରେ । ସାଇକେଲରେ କଲେଜ ଯିବାଆସିବା କରୁଥିଲି । ପଢ଼ାପଢ଼ି କରିବା, ସାହିତ୍ୟ ସଭାମାନଙ୍କରେ ଯୋଗଦେବା ଓ ବନ୍ଧୁମାନଙ୍କ ସହିତ ଆଳାପ-ଆଲୋଚନାରେ ଦିନସବୁ ଅତିବାହିତ ହେଉଥିଲା ।

ରାଜସ୍ଥାନ କଲେଜରେ ମୋର ସୌଭାଗ୍ୟଥିଲା ପ୍ରଫେସର ଗିରିଜା ଶଙ୍କର ରାୟଙ୍କ ସାହଚର୍ଯ୍ୟ । କାରଣ ସେହିଁ ଥିଲେ କଲେଜର ଅଧକ୍ଷ । ସେ ଥିଲେ ଇଂରାଜୀ ସାହିତ୍ୟର ଅବସରପ୍ରାପ୍ତ ପ୍ରଫେସର, ମୁଁ ଥିଲି ଇଂରାଜୀ ଅଧ୍ୟାପକ । ଆମ ଭିତରେ ସମ୍ପର୍କ ଥିଲା ସ୍ୱାଭାବିକ ।

ଅତି ଧୀରସ୍ଥିର, ସମୟାନୁବର୍ତ୍ତୀ ଥିଲେ ଗିରିଜାଶଙ୍କର ରାୟ । କଲେଜ ଘଣ୍ଟାରେ ଛଅଟା ବାଜୁଥିବା ସମୟରେ ସେ କଲେଜ ଗେଟ୍ ପାଖରେ ପହଞ୍ଚୁଥିଲେ ଓ ଠିକ୍ ଆଠଟାରେ କଲେଜ ଛାଡ଼ୁଥିଲେ । କେହିକେହି ଏହାକୁ ଅତିରଞ୍ଜିତ ମନେକରିପାରନ୍ତି; କିନ୍ତୁ ଗିରିଜାଶଙ୍କରଙ୍କ ଆଗମନ-ପ୍ରସ୍ଥାନରେ ଏକ ମିନିଟ୍ ବିଳମ୍ବ ମଧ୍ୟ ହେଉନଥିଲା । ଛଅ ମାସ ମଧ୍ୟରେ ସେ କେବେ ବିରକ୍ତ ହେବା ମଧ୍ୟ ମୁଁ ଲକ୍ଷ୍ୟ କରିନଥିଲି ।

ଗିରିଜାଶଙ୍କର ନିଜେ ଅତ୍ୟନ୍ତ ଉତ୍ସାହରେ ପ୍ରି-ୟୁନିଭରସିଟି କ୍ଲାସ ନେଉଥିଲେ । ଇଂରାଜୀ ପଢ଼ାଇବା ସମୟରେ ସେ ଓଡ଼ିଆ ଭାଷା ଓ ସାହିତ୍ୟରୁ ଉଦାହରଣମାନ ଦେଉଥିଲେ । ବିଶେଷତଃ ରାଧାନାଥ ରାୟଙ୍କ କବିତାସବୁ ତାଙ୍କର ପ୍ରାୟ ମୁଖସ୍ଥ ଥିଲା । ଇଂରାଜୀ ସାହିତ୍ୟ ସହିତ ଓଡ଼ିଆ ସାହିତ୍ୟର ତୁଳନା ନକଲେ ଓ ସମ୍ପର୍କ ନବୁଝିଲେ ଇଂରାଜୀ ସାହିତ୍ୟ ଅଧ୍ୟୟନ ଯେ ନରର୍ଥକ, ବୋଧହୁଏ ଗିରିଜାଶଙ୍କର ରାୟଙ୍କର ଏହା ବିଶ୍ୱାସ ଥିଲା ।

ଗିରିଜାଶଙ୍କରଙ୍କ ବେଶପୋଷାକ ଥିଲା ଅଭିଜାତ ଓ ପାରମ୍ପରିକ । ଧୋତି, ଗଳାବନ୍ଦ କୋଟ ପିନ୍ଧି ସେ କଲେଜକୁ ଆସୁଥିଲେ । ଛାତି ପକେଟ୍‌ରେ ଥିଲା ଘଣ୍ଟା । ଆଖିରେ ଚଷମା । କଥାବାର୍ତ୍ତା କଲାବେଳେ ଅନେକ ଶବ୍ଦ ସେ ଗିଳି ପକାଉଥିଲେ । 'ବୁଝିଲ'କୁ କହୁଥିଲେ 'ବୁଲ୍‌ଲ' ବା ସେହିପରି କିଛି ।

ସନ୍ଧ୍ୟାରେ ଘଣ୍ଟା ପରେ ଘଣ୍ଟା ତାଙ୍କ ନିକଟରେ ବସି ସାହିତ୍ୟ ଓ ଜୀବନ ସମ୍ପର୍କରେ ଅନେକ କିଛି ଶୁଣିବାର ସୁଯୋଗ ମୋର ଘଟିଥିଲା । କିଛି କଛି ବ୍ୟକ୍ତିଗତ କଥା ମଧ୍ୟ ମୋତେ ସେ କହିଥିଲେ । ଯେପରି-ଘରେ ତାଙ୍କର ମାଆ ଓ ସ୍ତ୍ରୀ । ସେହିଁ

ଏକମାତ୍ର ପୁରୁଷ ଲୋକ । ଘରର ଦାୟିତ୍ୱ ତାଙ୍କରି ଉପରେ । ସତୁରୀରୁ ଊର୍ଦ୍ଧ୍ୱ ଜଣେ ବୃଦ୍ଧ ଏପରି କହିବାରେ କିଛି ଆମୋଦକର ଥିଲା ହୁଏତ ।

୧୯୬୭ ଜାନୁଆରୀ ପ୍ରଥମ ସପ୍ତାହରେ ରାଜସ୍ଥାନ କଲେଜ ଛାଡ଼ି ମୁଁ ପୁରୀ କଲେଜରେ ଯୋଗଦେଲି । ରାଜ୍ୟ ପବ୍ଲିକ ସର୍ଭିସ କମିସନ୍ ମୋତେ ଓଡ଼ିଶା ଶିକ୍ଷା ସେବାପାଇଁ ମନୋନୀତ କରିଥିଲେ ।

କୌଣସି କାରଣରୁ ବୋଧହୁଏ ଦୁଇବର୍ଷପରେ ରାଜସ୍ଥାନ କଲେଜ ବନ୍ଦ ହୋଇଗଲା । ଥରେ କଲେଜଟି ଆରମ୍ଭ ହେଲେ ତାହା ବନ୍ଦ ହୋଇଯିବା ବିରଳ ଘଟଣା । ରାଜସ୍ଥାନ କଲେଜ ବନ୍ଦ ହେବାର କାରଣ ଅବଶ୍ୟ ମୋତେ ଜଣାନାହିଁ ।

ଗିରିଜାଶଙ୍କର ହଠାତ୍ ମୃତ୍ୟୁବରଣ କରିଥିଲେ । କେତେଜଣ ଛାତ୍ରଙ୍କୁ ନିଜ ଗୃହରେ ପଢ଼ାଉଥିବା ସମୟରେ ସେ ଟଳିପଡ଼ିଲେ ଚୌକି ଉପରେ, ମାଆ ଓ ସ୍ତ୍ରୀଙ୍କୁ ପଛରେ ଛାଡ଼ିଦେଇ ।

ରାମଶଙ୍କର ରାୟ, ଗୌରୀଶଙ୍କର ରାୟ, ରାଧାନାଥ ରାୟଙ୍କ ପରିବାରରୁ ଆସିଥିଲେ ଗିରିଜାଶଙ୍କର ରାୟ । ଓଡ଼ିଆ ଭାଷା, ସାହିତ୍ୟ, ସଂସ୍କୃତି ପାଇଁ ରାୟ ପରିବାରର ଅବଦାନ ବିପୁଳ । ଗିରିଜାଶଙ୍କର ରାୟ କେବଳ ଜଣେ ପ୍ରବୀଣ ଅଧ୍ୟାପକ ବା ଶିକ୍ଷାବିତ୍ ନଥିଲେ, ସେ ମଧ୍ୟ ଥିଲେ ଜଣେ ପ୍ରଖ୍ୟାତ ସମାଲୋଚକ । *'ଓଡ଼ିଆ ନାଟ୍ୟକଳା'* ତାଙ୍କର ଏକ ମୂଲ୍ୟବାନ୍ ଗ୍ରନ୍ଥ ।

ରାଜସ୍ଥାନ କଲେଜରେ ଛାତ୍ରସଂଖ୍ୟା ଥିଲା ଶହେ ଅଠେଇଶି । ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ବୟସରେ ମୋ'ଠାରୁ ବଡ଼ । କାରଣ ସେ ସମୟରେ ସାନ୍ଧ୍ୟ କଲେଜମାନଙ୍କରେ ଅଫିସ ପ୍ରଭୃତିରେ ଚାକିରୀ କରିଥିବା ବ୍ୟକ୍ତିମାନେ ହିଁ ନାମ ଲେଖାଉଥିଲେ । ସମ୍ପ୍ରତି ପରିସ୍ଥିତି ବଦଳିଯାଇଛି । ଯେଉଁମାନେ ଦିନ କଲେଜରେ ସ୍ଥାନ ପାଉନାହାନ୍ତି, ସେମାନେ ସାନ୍ଧ୍ୟ କଲେଜମାନଙ୍କରେ ନାମ ଲେଖାଉଛନ୍ତି । ଅଧିଂକାଶ ସାନ୍ଧ୍ୟ କଲେଜ ପ୍ରାତଃ କଲେଜରେ ପରିଣତ ହୋଇଛି ।

ଦିନେ ମୋ କ୍ଲାସ ପରେ କମନ୍ ରୁମରେ ବସିଛି, କେହି ଜଣେ ବାହାରେ ମୋତେ ଅଭିଭାବକ ଠାଣିରେ ହାତଠାରି ଡାକିଲେ । ବାହାରକୁ ଆସିଲି ।

ସେ କହିଲେ, ''ଆପଣ ଖୁବ୍ ଭଲ ପଢ଼ାଉଛନ୍ତି ।ଆପଣଙ୍କ ଭବିଷ୍ୟତ ଉଜ୍ଜ୍ୱଳ ।''

''ଆପଣ କିଏ ?'' ପଚାରିଲି ।

''ମୁଁ ଆପଣଙ୍କର ଜଣେ ଛାତ୍ର । ମୋର ନାମ ଡକ୍ଟର ହୁଦା । ଆପଣ ଯାହା ପଢ଼ାଉଛନ୍ତି, ମୁଁ ଅବଶ୍ୟ ସବୁ ବୁଝିପାରୁ ନାହିଁ । କିନ୍ତୁ ଆପଣ ଭଲ ପଢ଼ାଉଛନ୍ତି ନିଶ୍ଚୟ ।''

ଏହାପରେ ସେ ମୋତେ ନିମନ୍ତ୍ରଣ କଲେ ତାଙ୍କ ଘରକୁ । ନିଜ ନିଜ ସାଇକେଲ୍ ଚଳାଇ ଗୁରୁ-ଶିଷ୍ୟ ଯଥା ସମୟରେ ତାଙ୍କ ଘରେ ପହଞ୍ଚିଲୁ । କୌଣସି ଅନ୍ଧାରିଆ ଗଳିରେ ଦୁଇବଖରା ଚାଳ ଘର । ଘରର ଗୋଟିଏ ଅଂଶରେ ହୋମିଓପାଥି କ୍ଲିନିକ୍ ।

ଡକ୍ଟର ହୁଦା ମୋତେ ହର୍‌ଲିକ୍‌ସ୍ ପିଆଇଲେ । ''ଆପଣ ନିଜ ସ୍ୱାସ୍ଥ୍ୟର ଅଧିକ ଯତ୍ନ ନେବା ଉଚିତ୍'', ସେ କହିଲେ, ''ପ୍ରତିଦିନ ଦୁଇଟା ହାଫ୍-ବଏଲ୍‌ଡ୍ ଅଣ୍ଡା ଖାଇବେ । ପାଣି ଫୁଟି ଆସିଲେ ଅଣ୍ଡା ପକାଇବେ । ଗୋଟିଏ ମିନିଟ୍ । ବାସ୍ !''

ରାଜସ୍ଥାନ କଲେଜ ଛାଡ଼ିବାପରେ ଡକ୍ଟର ହୁଦାଙ୍କ ସହିତ ଆଉ ସାକ୍ଷାତ ହୋଇନାହିଁ । ସେହି ଶୁଭେଚ୍ଛୁ ଛାତ୍ରଙ୍କୁ ବର୍ତ୍ତମାନ ସତୁରୀ ବର୍ଷ ହୋଇଥିବ । ସେ ସମ୍ପୂର୍ଣ୍ଣ ନିରାମୟ ଥିବେ ବୋଲି ଆଶା କରୁଛି ।



# ପୁରୀ କଲେଜରେ କପିଧରା

ଅଧ୍ୟାପକ ଚାକିରୀ କଲେ କେବେ ନା କେବେ 'କପି' ସମସ୍ୟାର ସମ୍ମୁଖୀନ ହେବାକୁ ହୁଏ । ଏହି ସମସ୍ୟାର ସମାଧାନ ଅବଶ୍ୟ ବିଭିନ୍ନ ଅଧ୍ୟାପକ ବିଭିନ୍ନ ଉପାୟରେ କରିଥାନ୍ତି ।

୧୯୬୭ରେ ମୁଁ ଥିଲି ପୁରୀ ସାନ୍ଧ୍ୟ କଲେଜରେ ଅଧ୍ୟାପକ । କୌଣସି ଟେଷ୍ଟ ପରୀକ୍ଷାରେ ଦେଖିଲି, ବେଶ୍ କିଛି ସଂଖ୍ୟକ ଛାତ୍ର ନିର୍ଭୟରେ କପି କରୁଛନ୍ତି । ମୁଁ କେତେକ ଛାତ୍ରଙ୍କଠାରୁ ଆପତ୍ତିଜନକ କାଗଜସବୁ ସଂଗ୍ରହ କରି ପରୀକ୍ଷା ହଲ୍‌ରେ ଉପସ୍ଥିତ ବରିଷ୍ଠ ନିରୀକ୍ଷକ ଦର୍ଶନ ଅଧ୍ୟାପକ ରମେଶ ଚନ୍ଦ୍ର ପଟ୍ଟନାୟକଙ୍କୁ ଦେଲି । ବର୍ତ୍ତମାନ ସେ ହିଁ ସ୍ଥିର କରିବେ ପରବର୍ତ୍ତୀ କାର୍ଯ୍ୟପନ୍ଥା ।

ରମେଶବାବୁ ଜଣେ ରହସ୍ୟପ୍ରିୟ, ବନ୍ଧୁବତ୍ସଳ, ଦୁର୍ବଳଶରୀର ବ୍ୟକ୍ତି; ବୟସ ତୁଳନାରେ ଯଥେଷ୍ଟ ବଡ଼ ଦେଖାଯାନ୍ତି । ବାହାରକୁ ସେ ଯେପରି ସିରିୟସ୍ ମନେ ହୁଅନ୍ତି, ଭିତରେ ଠିକ୍ ଓଲଟା-ବେପରୁଆ, ଆଳାପପ୍ରିୟ, ସ୍ନେହୀ । ମୁଁ କପି ଧରି ରମେଶବାବୁଙ୍କୁ ଦେବାପରେ ଛାତ୍ରମାନଙ୍କ ମଧ୍ୟରେ ଭୟ ସୃଷ୍ଟିହେଲା ନିଶ୍ଚୟ । କପି କରିବା ଅପରାଧରେ ଯଦି ସେମାନଙ୍କୁ ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାନଯାଏ, ତେବେ ସେମାନେ ଗୋଟିଏ ବର୍ଷ ହରାଇ ବସିବା ସୁନିଶ୍ଚିତ !

ପରୀକ୍ଷାପରେ କେତେକ ଛାତ୍ର ହଲ୍ ବାହାରକୁ ଆସି ମୋ ସମ୍ପର୍କରେ-ଏବଂ ରମେଶବାବୁଙ୍କ ସମ୍ପର୍କରେ-କିଛି ମନ୍ତବ୍ୟ ଦେବାର ଶୁଣିଲି । ଗୋଟିଏ ମାରୱାଡ଼ି ଛାତ୍ର ବଙ୍କା ଓଡ଼ିଆରେ ମୁଁ କିପରି ଏକଦା ପୁରୀ କଲେଜର ସଭାପତି ନିର୍ବାଚନରେ ହାରିଯାଇଥିଲି, ତାହା ଅନ୍ୟମାନଙ୍କୁ ଶୁଣାଉଥିଲା । ଯାହାର ଅର୍ଥ-ନିର୍ବାଚନରେ ହାରିଯାଇଥିବା ଜଣେ ବ୍ୟକ୍ତି କପି ଧରି ବାହାଦୁରୀ ଦେଖାଉଛି । (ଅନ୍ୟାନ୍ୟ ମନ୍ତବ୍ୟସବୁ ମୋର ଅବଶ୍ୟ ମନେ ନାହିଁ ।)

ଛାତ୍ରମାନଙ୍କ ମନ୍ତବ୍ୟମାନ ଶୁଣିବା ପରେ ମୁଁ ଓ ରମେଶବାବୁ ସ୍ଥିରକଲୁ, ବ୍ୟାପାରଟି ଅଧ୍ୟକ୍ଷଙ୍କୁ ଜଣାଇଦେବୁ । ସେ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣକରିବେ । ପରୀକ୍ଷା ନିରୀକ୍ଷକ ଭାବରେ ଅଧକ୍ଷଙ୍କୁ କପି ସମ୍ପର୍କରେ ଜଣାଇଦେବା ତ ଆମର କର୍ତ୍ତବ୍ୟ- ଆମେ ତାହାହିଁ କଲୁ ।

ସେତେବେଳେ ପୁରୀ କଲେଜରେ ଜଣେ ଦକ୍ଷ ଓ ସଫଳ ଅଧକ୍ଷ ଥିଲେ । କଲେଜରେ ସକଳ ପ୍ରକାର ଉନ୍ନତିପାଇଁ ସେ କଠୋର ପରିଶ୍ରମ କରୁଥିଲେ । କଲେଜର ପାଠାଗାରଟିକୁ ସଂଗଠିତ କରିବାପାଇଁ ସେ ମୋତେ ଅନ୍ୟ କେତେଜଣ ଅଧ୍ୟାପକଙ୍କୁ ଦାୟିତ୍ୱ ଦେଇଥିଲେ । ସେ ନିଜେ ମଧ ଆମ ସହିତ କାର୍ଯ୍ୟକରୁଥିଲେ । ପରେ ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ହୋଇଥିଲେ । ତାଙ୍କ ସହିତ ମୋର ସମ୍ପର୍କ ସବୁ ସମୟରେ ସୌହାର୍ଦ୍ଦପୂର୍ଣ୍ଣ ରହିଆସିଛି ।

କପି ଧରିବାର ତିନିଚାରି ଦିନଯାଏଁ ସାନ୍ଧ୍ୟ କଲେଜରେ ଅସ୍ୱସ୍ତିକର ବାତାବରଣ ଲାଗିରହିଥିଲା । କଲେଜଟି ସେଇ ବର୍ଷ ଆରମ୍ଭ ହୋଇଥାଏ - କେବଳ ପ୍ରି-ୟୁନିଭରସିଟି କ୍ଲାସ । ସେ କ୍ଲାସରେ ଛାତ୍ରମାନଙ୍କ ବିରୁଦ୍ଧରେ ପୁଣି କପିଧରା ଅଭିଯୋଗ ! ଅଧକ୍ଷ ଯେପରି ଦୃଢ଼ ଓ ଶୃଙ୍ଖଳା ପ୍ରିୟ, କପି କରୁଥିବା ଛାତ୍ରମାନଙ୍କ ପ୍ରତି ସେ କଠୋର ଦଣ୍ଡବିଧାନ କରିବେ ନିଶ୍ଚୟ ।

ଏହାପରେ କ'ଣ ହେଲା କେଜାଣି, ରମେଶବାବୁଙ୍କଠାରୁ ଶୁଣିଲି, ଅଧକ୍ଷ ମହୋଦୟ କପି କରିଥିବା ଛାତ୍ରମାନଙ୍କୁ ନିଜ ଅଫିସକୁ ଡକିଛନ୍ତି । ଦିନେ ଦଳେ ଛାତ୍ର ଅଧକ୍ଷଙ୍କ ଅଫିସକୁ ଯାଇ ବେଶ୍ କିଛିସମୟ ଆଲୋଚନା କଲେ ।

ଆଲୋଚନା ପରିଣତି ଥିଲା ନାଟକୀୟ । ହସ ହସ ମୁଖରେ ଛାତ୍ରମାନେ ବାହାରି ଆସିଲେ ଅଧକ୍ଷଙ୍କ ଅଫିସ୍ ଗୃହରୁ-ରମେଶବାବୁ ଓ ମୋ'ପରି କପିଧରାଳୀମାନଙ୍କ ପ୍ରତି ସେମାନଙ୍କ ମୁଖରେ ତାଚ୍ଛଲ୍ୟଭାବ ଓ କିଛି କିଛି ମୃଦୁ ଭର୍ତ୍ସନା । ଯାହାର ଅର୍ଥ- ଜଣେ ଭଲ ପ୍ରିନିସ୍‌ପାଲ୍ ଥିଲେ ଯେତେ କପି ଧରୁଛ, ଧରୁଥାଅ ।

ଶୁଣିଲି, କପି କରିଥିବା ଛାତ୍ର ଓ ଅଧକ୍ଷଙ୍କ ମଧ୍ୟରେ କିଛି ଗୋଟାଏ ସାଲିସ୍ ହୋଇଗଲା । ସ୍ଥିରହେଲା, ସବୁ ଛାତ୍ରଙ୍କୁ ବିଶ୍ୱବିଦ୍ୟାଳୟ ପରୀକ୍ଷାପାଇଁ ଉତ୍ତୀର୍ଣ୍ଣକରାଯିବ, କିନ୍ତୁ ଭବିଷ୍ୟତରେ ସେମାନେ ଆଉ କପି କରିବେନାହିଁ । ଅଧକ୍ଷଙ୍କଏତାଦୃଶ ଘୋଷଣାନାମାପରେ ଛାତ୍ରମାନେ ତାଙ୍କ ବେକରେ ଲମ୍ବାଇଦେଲେ ପ୍ରକାଣ୍ଡ ଏକ ଫୁଲମାଳ । (ବିଚରା ଫୁଲମାଳଟିକୁ ଏପରି ଏକ ମୁହୂର୍ତ୍ତ ପାଇଁ କିଛି ସମୟ ଅପେକ୍ଷା କରିବାକୁ ପଡ଼ିଥିବ ନିଶ୍ଚୟ ।)

ଏ ଘଟଣାଟି ଘଟିଥିଲା ଅଠେଇଶୀ ବର୍ଷ ତଳେ । ଏହାପରେ ଗଙ୍ଗାଧର ମେହେର କଲେଜରେ ଓ ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟକରିଆସିଛି ଏବଂ ଲକ୍ଷ୍ୟକରିଛି-ପୁରୀ କଲେଜର ଅଧ୍ୟକ୍ଷ କପି ସମସ୍ୟାର ସମାଧାନପାଇଁ ଯେଉଁ ନୀତି ଅବଲମ୍ବନ କରିଥିଲେ, ଅନ୍ୟ ଅଧ୍ୟକ୍ଷ, ବିଭାଗୀୟ ମୁଖ୍ୟ ଏବଂ କୁଳପତିମାନେ ମୋଟାମୋଟି ସେଇ ନୀତି ଅବଲମ୍ବନ କରିଥାନ୍ତି । ଯଦି କୌଣସି ସମୟରେ ଛାତ୍ର ଓ ଅଧ୍ୟାପକମାନେ ମୁହାଁମୁହିଁ ହୋଇଗଲେ ଓ ଅନୁଷ୍ଠାନରେ ଶାନ୍ତି ଭଙ୍ଗର ଆଶଙ୍କା ଦେଖାଦେଲା, ତେବେ କର୍ତ୍ତୃପକ୍ଷ ଛାତ୍ରମାନଙ୍କୁ ତୋଷଣ କରନ୍ତି ଏବଂ ଅଧ୍ୟାପକମାନଙ୍କୁ ଅପମାନିତ କରିବାରେ ହେଳା କରନ୍ତିନାହିଁ । ଏ ସମ୍ପର୍କରେ ମୁଁ ବହୁ ଉଦାହରଣ ଦେଇପାରେ । କର୍ତ୍ତୃପକ୍ଷ ଅଧ୍ୟାପକମାନଙ୍କୁ ଭୟ କରିବାର କାରଣ ନାହିଁ; କିନ୍ତୁ ଛାତ୍ରମାନଙ୍କୁ-ବିଶେଷତଃ କପି କରୁଥିବା ଛାତ୍ରମାନଙ୍କୁ ସେମାନଙ୍କ ପ୍ରାଣେ ପ୍ରାଣେ ଭୟ । ତେଣୁ କପି କରୁଥିବା ଛାତ୍ରମାନଙ୍କ ଫୁଲମାଳ ସେମାନେ ଗ୍ରହଣ କରନ୍ତି, ଅଧ୍ୟାପକମାନଙ୍କ ବିରକ୍ତି ପ୍ରତି ଖାତିର କରନ୍ତି ନାହିଁ ।



# ଚୋର, ନାଗ ସାପ ଓ ଚଟାଣରେ ରକ୍ତ

୧୯୬୯ ମସିହାର ଅନୁଭୂତି । ସେତେବେଳେ ମୁଁ ଥାଏ ସମ୍ବଲପୁର ଗଙ୍ଗାଧର ମେହର କଲେଜରେ ଅଧ୍ୟାପକ । ରହୁଥାଏ ବୁଢ଼ାରଜା ପାହାଡ଼ତଳେ ଭଡ଼ା ଘରଟିଏରେ ।

ମୁଁ ରହୁଥିବା ଦୁଇ ବଖୁରିଆ ଘରର ଗୋଟିଏ ପଟେ ପଡ଼ିଆ । ଅର୍ଥାତ୍ ମୁଁ ରହୁଥାଏ କଲୋନୀର ଶେଷ ଘରେ ।

ଦିନେ ଅଧରାତିରେ ଆମ ଶୋଇବାଘରେ ଚୋର ପଶିଲେ । ଘରେ ଆମେ ତିନି ଜଣ- ମୁଁ, ମୋ ସ୍ତ୍ରୀ ଓ ଆମର ଦୁଇବର୍ଷର ପୁଅ । ରାତିରେ ବିଦ୍ୟୁତ୍ କଟିଯାଇଥିଲା- ତେଣୁ ସବୁଆଡ଼ ଅନ୍ଧାର । ଚୋରମାନେ ଘରେ ପଶି ଟ୍ରଙ୍କ୍ ପରେ ଟ୍ରଙ୍କ୍ ବୋହି ନେଉଥିବାବେଳେ କୌଣସି ଶବ୍ଦ ହେବାରୁ ମୋ ସ୍ତ୍ରୀଙ୍କ ନିଦ ଭାଙ୍ଗିଗଲା । ସେ ଚିତ୍କାର କଲେ- ବାଳକୃଷ୍ଣ, ବାଳକୃଷ୍ଣ । (ବାଳକୃଷ୍ଣ ଆମର ଚାକର, ଅନ୍ୟ ବଖରାରେ ଶୋଇଥିଲା ।)

ମୁଁ ଉଠି ଲ୍ୟାମ୍ପ୍ ଲଗାଇ ଦେଖିଲାବେଳକୁ ଆମ ମୁଣ୍ଡଉପରେ ରଖାଯାଇଥିବା ଟ୍ରଙ୍କ୍‌ସବୁ ଆଉନଥିଲେ । ଭୟ ଲାଗିଲା । ତଥାପି ପଡ଼ିଆକୁ ବାହାରି ମୁଁ ଓ ମୋ ସ୍ତ୍ରୀ ହଲ୍ଲା କରିବାକୁ ଲାଗିଲୁ-ଚୋର, ଚୋର ।

ସକାଳ ହେବାକୁ ବେଶୀ ଡେରିନଥିଲା । କ୍ଷୀରପାଇଁ ଗୁଆଲା ଅଭିମୁଖେ ବାହାରିଥିବା ଜଣେ ଅଧ୍ୟାପକ ବନ୍ଧୁ କୁଆଡୁ ଆସି ପହଞ୍ଚିଗଲେ । ତା'ପରେ ଅନ୍ୟମାନେ । ଚୋରମାନେ କେଉଁ ପ୍ରକାର ର ହୋଇଥାଇପାରନ୍ତି, ଆଲୋଚନା ଆରମ୍ଭ ହୋଇଗଲା । ହୁଏତ ସେମାନେ ଆସନ୍ତି ରାୟପୁରରୁ; ଚୋରି କରିସାରି ଟ୍ରେନ୍‌ରେ ଫେରିଯାନ୍ତି ରାୟପୁର । ସେମାନଙ୍କ ପାଖରେ ଛୁରା, ଭୁଜାଲି ଇତ୍ୟାଦି ଥିବା ତ ସ୍ୱାଭାବିକ ।

ପରଦିନ ସକାଳେ ଥାନାରେ ଡାଏରି ଦେଲି । ଦିନ ଦଶଟାବେଳକୁ କୁକୁରଟାଏ ଆସିଲା । ଆମ ଘର ଓ ନିକଟବର୍ତ୍ତୀ ରାସ୍ତା ଶୁଙ୍ଘି ଶୁଙ୍ଘି ଶେଷରେ ସେ ପ୍ରବେଶ କଲା ମୋତେ ପଢ଼ାଇଥିବା ଜଣେ ବରିଷ୍ଠ ଅଧ୍ୟାପକଙ୍କ କ୍ୱାଟର୍ସ୍‌ରେ । ସନ୍ଧାନୀ କୁକୁରର ଦାୟିତ୍ୱରେ ଥିବା ସବ୍‌ଇନ୍‌ସ୍‌ପେକ୍ଟରଙ୍କୁ କୁକୁରର ଏମନ୍ତ ଗତିବିଧି ସମ୍ପର୍କରେ ପଚାରନ୍ତେ ସେ ଫୁସ୍ ଫୁସ୍ କହିଲା, ''କୁକୁରଟା ପାଗଳ ହୋଇଯାଇଛି । ତାକୁ ଆମର ମାରି ଦେବା କଥା । ଲୋକଦେଖାଣିଆ ତାକୁ ଏଠାକୁ ଆଣିଛୁ ।''

ଚୋରି ଜିନିଷ ମିଳିବାର ସାମାନ୍ୟତମ ଆଶାବି ନଥିଲା । ଥାନା ଅଫିସର କହିଲେ ମୋତେ, ''ଆପଣ ସାବଧାନ ନହେଲେ କାହିଁକି ? ଘର କବାଟ ଖୋଲାକରି ଶୋଇଲେ ଚୋର ତ ପଶିବା କଥା !''

ଟ୍ରଙ୍କରେ ଥିଲା ମୁଁ ଦିନେ ଦୁଇଦିନ ତଳେ ପାଇଥିବା ତିନିଚାରି ମାସର ଦରମା; ମୋ ସ୍ତ୍ରୀଙ୍କର ପ୍ରାୟ ସମସ୍ତ ସୁନା ଅଳଙ୍କାର; ଲୁଗାପଟା, ବହିପତ୍ର, କେତୋଟି ଆଲ୍‌ବମ୍, ଇତ୍ୟାଦି ।

ପଡ଼ିଶା ଘରର ବଙ୍ଗାଳୀ ଯୁବକ ଦୁଲାଲ୍ ସହିତ ଘଣ୍ଟା ପରେ ଘଣ୍ଟା ପାଖଆଖର ଅଞ୍ଚଳସବୁ ବୁଲି ଚୋରି ହୋଇଥିବା ଟ୍ରଙ୍କସବୁ ଖୋଜିଲୁ । ବିଶେଷତଃ ଆଲ୍‌ବମ୍‌ସବୁ ପ୍ରତି ମୋର ଥିଲା ଯଥେଷ୍ଟ ଭାବପ୍ରବଣତା ।

ଚୋରମାନେ ଟ୍ରଙ୍କ୍‌ସବୁ ପାଖଆଖରେ ଫିଙ୍ଗିଦେଇ ଯାଇଥିଲେ । କିଛି କିଛି ବହିପତ୍ର ଓ ଆଲ୍‌ବମ୍‌ସବୁ ମିଳିଗଲା । କିନ୍ତୁ ଗୋଟିଏ ଟ୍ରଙ୍କ ମିଳିଲା ନାହିଁ । ସେଥିରେ ମୋ ସ୍ତ୍ରୀଙ୍କର ଅର୍ଥନୀତିର ବେଶ୍ କିଛି ସଂଖ୍ୟକ ବହିଥିଲା । ଟଙ୍କାସୁନା ପାଇଁ ଯେତେ ନୁହେଁ, ଏଇ ବହିଗୁଡ଼ିକ ହରାଇ ସେ ଖୁବ୍ ଦୁଃଖିତ ହେଲେ ।

ଆମର ଏଇ ଚୋରି ଘଟଣାରେ ଆମର ବନ୍ଧୁ ଓ ପଡ଼ୋଶୀମାନେ ଖୁବ୍ ବିଚଳିତ ହୋଇଥିଲେ । କାରଣ ଆମେ ରହୁଥିବା ଅଞ୍ଚଳରେ ଅନ୍ତତଃ ନିକଟ ଅତୀତରେ ଏପରି ହୋଇନଥିଲା । ତା'ଛଡ଼ା ଚୋରମାନେ ଦେଶୀ ବା ସମ୍ବଲପୁରୀ ନଥଲେ; ସେମାନେ ଆସିଥିଲେ ସୁଦୂର ରାୟପୁରରୁ-ଏଇ ବିଶ୍ୱାସଟି ଭୟଭୀତ କରୁଥିଲା ସମସ୍ତଙ୍କୁ ।

ଚୋରିପରେ ସ୍ୱାଭାବିକ ଭାବରେ ଆମେ ବିମର୍ଷ ହୋଇପଡ଼ିଲୁ । ଚୋରିହେବାର ତିନି ଚାରି ଦିନପରେ ଶଙ୍କରାଚାର୍ଯ୍ୟଙ୍କ ସ୍ତୋତ୍ରଥିବା ବହିଟିଏ ଖୋଜି ଗୋଟିଏ ବାକ୍‌ସର ଘୋଡ଼ଣୀ ଉଠାଇ ଦେଲାବେଳକୁ ବାକ୍‌ସତଳୁ ବାହାରି ଆସିଲା

ନାଗସାପଟିଏ । (ବାକ୍ସଟି ରଖାଯାଇଥିଲା କେତୋଟି ଇଟା ଉପରେ ।) ସାପଟି ଫଣାଟେକି ଫୁତ୍କାର କରି ନିଦ୍ରାରେ ବ୍ୟାଘାତ ଦେବାର କାରଣ ପଚାରିଲା ହୁଏତ ।

ମୋ ସ୍ତ୍ରୀ ବସିଥିଲେ ବାକ୍ସଠାରୁ ଅଳ୍ପଦୂରରେ-କିଛି ଗୋଟାଏ ସିଲେଇ କରୁଥିଲେ । ମୁଁ ତାଙ୍କୁ ଦୂରକୁ ଠେଲିଦେଲି । ପୁଅ ଶୋଇଥିଲା ଖଟ ଉପରେ । ପଡ଼ିଶାଘରୁ ଦୁଲାଲ୍‌କୁ ଡକାଗଲା । ଦୁଲାଲ୍ ଖଟ ଉପରୁ ପୁଅକୁ ବାହାରକୁ ନେଇ ଆସିଲା । ତା'ପରେ ଅଭ୍ୟସ୍ତ ରୀତିରେ ସାପଟିକୁ ବାଡ଼ିରେ ମାରି ପଡ଼ିଆରେ ଫିଙ୍ଗିଦେଲା ।

ଲାଗ୍‌ଲାଗ୍ ଚୋରି ଓ ନାଗ ସାପ । ଆମର କିଛି ଗୋଟାଏ ଦୁର୍ଦ୍ଦଶା ପଡ଼ିଛି- ଏହିପରି ମତାମତ ପ୍ରକାଶ ପାଇଲା ଆମ ଅଞ୍ଚଳରେ । ଶୁଣିଲି- ଆମ ଘରଠାରୁ ଅଳ୍ପଦୂରରେ ରହୁଥିବା ସ୍ତ୍ରୀ ଜଣଙ୍କର କୁଆଡ଼େ ଭୟରେ ଜର ହୋଇଗଲା ।

ଏଇ ଅନୁଭୂତିପରେ ସମ୍ବଲପୁରରେ ରହିବା ପାଇଁ ମୋର ଆଉ ଆଗ୍ରହ ରହିଲାନାହିଁ । ଆପତତଃ ଆଉ ଗୋଟିଏ ଘର ଭଡ଼ା ନେବା ପାଇଁ ସ୍ଥିର କଲି ।

କିନ୍ତୁ ସେତିକି ନୁହେଁ । ଦିନେ ସକାଳେ ଦେଖିଲି, ଡ୍ରଇଁ ରୁମ୍ ଚଟାଣରେ ଠୋପା ଠୋପା ରକ୍ତ ପଡ଼ିଛି ।

ଓଟପିଠିରେ ଶେଷ କୁଟା ବୋଲି ଇଂରାଜୀରେ ଗୋଟିଏ କଥା ଅଛି । ଏହାର ଅର୍ଥ-ଓଜନ ଖୁବ୍ ବେଶୀ ହେବା ପରେ କୁଟା ଖଣ୍ଡିଏ ମଧ୍ୟ ଭାରସାମ୍ୟ ଭାଙ୍ଗି ଦେଇପାରେ । ଚୋର ଓ ନାଗସାପ ପରେ ଏ ରକ୍ତଠୋପାସବୁ କ'ଣ ?

ରାୟପୁରର ଚୋର କିମ୍ବା ପଡ଼ିଆରୁ ଉଠିଆସି ବାକ୍ସତଳେ ଲୁଚିଥିବା ନାଗସାପଟିର ଅଭିପ୍ରାୟ ହୁଏତ ବୁଝିହୁଏ, କିନ୍ତୁ ଚଟାଣରେ ଏ ରକ୍ତଠୋପାସବୁ ଆସିଲା କୁଆଡୁ ? ''ନିଶ୍ଚୟ କିଛି ମନ୍ତ୍ରଯନ୍ତ୍ର ବା ଗୁଣିଗାରୁଡ଼ି ହୋଇଛି, ଆମ ବିରୁଦ୍ଧରେ'' କିମ୍ବା ''ଆମର କୌଣସି ମହାଦଶା ପଡ଼ିଛି''- ଏହିପରି ଚିନ୍ତାଧାରାଟିଏ ଘୁରି ଲାଗିଲା ଆମ ଚାରିପାଖରେ ।

ଏ ସମୟଟି ଥିଲା ମୋ ପାଇଁ ଅତି ଦୁଃସହ । କୌଣସି ପ୍ରାକୃତିକ ପରିଣତିର କେବଳ ପ୍ରାକୃତିକ କାରଣଟିଏ ହିଁ ରହିଥାଏ-ଏଥିରେ ମୁଁ ବିଶ୍ୱାସ କରେ । ନିଜକୁ ଯୁକ୍ତିବାଦୀ ବୋଲି ମନେକରିବାକୁ ମୁଁ ପସନ୍ଦ କରେ । କିନ୍ତୁ ଘର ଭିତରେ ଠୋପା ଠୋପା ରକ୍ତ ଆସିଲା କୁଆଡୁ ? ଏହାର କୌଣସି ପ୍ରାକୃତିକ କାରଣ ଆପତତଃ ନଥିଲା । ମନ ଭିତରେ ସୃଷ୍ଟିହେଲା ଏକ ଭୟ ଓ ଶୂନ୍ୟତା ।

ରକ୍ତଫୋପାସବୁର କାରଣ ଖୋଜିବାରେ ଅବଶ୍ୟ ମୁଁ ହେଳା କଲିନାହିଁ । ମୋର କେତେଜଣ ବନ୍ଧୁ ମଧ୍ୟ ମୋ ସହିତ ସହଯୋଗ କଲେ । ଏବଂ ଆଶ୍ୱସନାର କଥା, କାରଣଟି ମଧ୍ୟ ଧରାପଡ଼ିଗଲା ଅବଶେଷରେ ।

ଘରଛାତକୁ ଲାଗିଥିବା କୌଣସି ଗୋଟିଏ ଜଳାରେ ଥିଲା ଘରଚଟିଆର ବସା । ବସାରେ ଦୁଇ ତିନୋଟି ଛୁଆ । କୌଣସି କାରଣରୁ ସେଇ ଚଢ଼େଇମାନଙ୍କ ରକ୍ତ ପଡ଼ିଥିଲା ଆମ ଚଟାଣରେ ।

କ୍ରମଶଃ ବିଶ୍ୱାସ ଓ ସାହସ ଫେରିଆସିଲା ମନରେ । ସମ୍ବଲପୁରରେ ଆଉ ଗୋଟିଏ ଭଡ଼ାଘର ନେବାର ଆବଶ୍ୟକତା ମଧ୍ୟ ପଡ଼ିଲା ନାହିଁ । କାରଣ ଅଳ୍ପ କେତେ ସପ୍ତାହପରେ ମୁଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ଯୋଗଦେବାପାଇଁ ଭୁବନେଶ୍ୱର ଚାଲିଆସିଲି ।



# ହିମାଳୟର ଆହ୍ୱାନ

ଚୋର, ନାଗସାପ ଓ ଚଟାଣରେ ରକ୍ତ ଅନୁଭୂତିପରେ ବୁଢ଼ାରଜା ପାହାଡ଼ତଳ ଭଡ଼ାଘର ବଦଳାଇ ଅନ୍ୟତ୍ର ଉଠିଯିବାକୁ ମୁଁ ଚାହିଁଲି । ତା'ପରେ ଅନୁସନ୍ଧାନ କରିବାରେ ଲାଗିଲି ଅନ୍ୟ ଭଡ଼ାଘରଟିଏ ।

ସେତେବେଳେ ଅର୍ଥାତ୍ ପ୍ରାୟ ପଚିଶି ବର୍ଷ ତଳେ ସମ୍ବଲପୁରରେ ଭଲ ଭଡ଼ାଘରଟିଏ ପାଇବା ଏତେ ସହଜ ନଥିଲା । ପୁରୀ କଲେଜରୁ ଗଙ୍ଗାଧର ମେହର କଲେଜକୁ ବଦଳି ହେବାପରେ ସମ୍ବଲପୁରର ତତ୍‌କାଳୀନ ମ୍ୟୁନିସିପାଲଟି ଅଫିସର ବିବେକାନନ୍ଦ ମିଶ୍ରଙ୍କୁ ଚିଠିଲେଖି ସମ୍ବଲପୁରରେ ଆମେ ଭଡ଼ାଘରଟିଏ ଯୋଗାଡ଼ କରିଥିଲୁ । କିନ୍ତୁ ନନା, ସ୍ତ୍ରୀ ଓ ଦୁଇ ବର୍ଷର ପୁଅ ସହିତ ସମ୍ବଲପୁରରେ ପହଞ୍ଚି ଶୁଣିଲି, ଘରମାଲିକ ଅନ୍ୟ କାହାକୁ ଘରଟି ଭଡ଼ା ଦେଇସାରିଛନ୍ତି । ଆମକୁ ଯେତିକି ଟଙ୍କାରେ ଭଡ଼ା ଦେଇଥାନ୍ତେ, ଅନ୍ୟ କେହି ତା'ଠାରୁ ପାଞ୍ଚଟଙ୍କା ଅଧିକଭଡ଼ା ଯାଚନ୍ତେ ସେ ତାଙ୍କ ପୂର୍ବ ସିଦ୍ଧାନ୍ତ ବଦଳାଇବା ଛଡ଼ା ହୁଏତ ତାଙ୍କର ଅନ୍ୟ ଉପାୟ ନଥିଲା ।

ସମ୍ବଲପୁରରେ ଅଳ୍ପ କେତେଦିନ ବିବେକାନନ୍ଦବାବୁଙ୍କ ଘରେ ରହି ଭଡ଼ାଘରଟିଏ ଯୋଗାଡ଼ କଲୁ । କେହିଜଣେ କହିଲେ, ''ବୁଢ଼ାରାଜା କଲୋନିରେ ଦତ୍ତବାବୁଙ୍କ ଘରଟିଏ ଭଡ଼ା ଲାଗିବ । କିନ୍ତୁ ସେ ଭଡ଼ାଟିଆମାନଙ୍କୁ ବହୁତ ହଇରାଣ କରନ୍ତି ।''

ଦତ୍ତବାବୁଙ୍କୁ ଭେଟିଲି । ପ୍ରାୟ ଷାଠିଏ ବର୍ଷର ବୁଢ଼ା ।କଳା, କୁଟାପରି ପତଳା ଚେହେରା । ମୋତେ ସେ ଖୁବ୍ ଭଲ ବ୍ୟବହାର ଦେଖାଇଲେ । ଘରଭଡ଼ା ଥିଲା ବୋଧହୁଏ ଅଶୀ ଟଙ୍କା, ଘରଭଡ଼ା ଛଡ଼ା ମୋତେ ଆଉ ଦୁଇଟି ଟଙ୍କା ଦେବାକୁ ହେବ ନଳା ଓ ପାଇଖାନା ସଫା କରିବାପାଇଁ ।

ଦତ୍ତବାବୁଙ୍କ ଘରେ ସ୍ତ୍ରୀ, ଯୁବତୀ ଝିଅ ଓ ପୁତ୍ରରା ଦୁଲାଲ୍ । ମଧ୍ୟବିତ୍ତ ବଙ୍ଗାଳୀ ପରିବାର । ଚାଲିଚଳଣ ଓ ରୁଚି ପରିଚ୍ଛନ୍ନ । ସେମାନଙ୍କ ସହିତ ଆମର ସମ୍ପର୍କ ଥିଲା ସୌହାର୍ଦ୍ଦ୍ୟପୂର୍ଣ୍ଣ ।

ମୋ ସ୍ତ୍ରୀ ଗୋଟିଏ ଦୁଇଟି କଖାରୁ ଗଛ ଲଗାଇ ତାର ଡଙ୍କ ମଡ଼ାଇଦେଇଥିଲେ ଆମର ରୋଷେଇ ଘରର ଖପରୁଲି ଛାତ ଉପରକୁ । ଯଥା ସମୟରେ ପାଚିଲା କଖାରୁ କେତୋଟି ତୋଳିବାପରେ ଆମେ ବୁଢ଼ା କଖାରୁ ଗଛସବୁ ଉପାଡ଼ିଦେଲୁ ।

କଖାରୁଗଛସବୁ ଉପାଡ଼ିଦେବା ପରଦିନ ସକାଳେ ଆମ ସମ୍ମୁଖରେ ଉପସ୍ଥିତ ହେଲେ ଦତ୍ତବାବୁ । ବିଚଳିତ ଦିଶୁଥାନ୍ତି । ''କଖାରୁଗଛସବୁ ଏମିତି ଉପାଡ଼ି ଦେବାକଥା ନୁହେଁ ।'' ସେ କହିଲେ, ''ଗଛଗୁଡ଼ାକ ନିଜେ ଶୁଖି ଯାଇଥାନ୍ତେ ।''

ଆମେ ଦତ୍ତବାବୁଙ୍କ ଘରେ ପ୍ରାୟ ଦେଢ଼ବର୍ଷ ରହିଥିଲୁ । ସେ ଆମର ଘରଭଡ଼ା ବଢ଼ାଇନଥିଲେ । କେବଳ ଦୁଇ ବା ତିନିଥର ମୋତେ କହିଥିଲେ, ''ମିଶ୍ରବାବୁ, ଆସନ୍ତା ମାସଠାରୁ ପାଇଖାନା ସଫାଖର୍ଚ୍ଚ ପାଇଁ ଗୋଟିଏ ଟଙ୍କା ଅଧିକା ଦେବେ ।''

ଦତ୍ତବାବୁଙ୍କ କଥାରେ ମୁଁ ଅରାଜି ହୋଇନଥିଲି ।

ଭଡ଼ାଘର ଅନୁସନ୍ଧାନରେ ପରିଚୟହେଲା ଅବକାରୀ ବିଭାଗରୁ ଅବସର ନେଇଥିବା ଜଣେ ବୃଦ୍ଧଙ୍କ ସହିତ । ଦିନେ ସକାଳେ ସେ ନିଜେ ଆମ ଘରେ ଉପସ୍ଥିତ ହେଲେ ।

ବେଶ୍ କିଛି ସମୟ ଚାଲିଲା ଆମର ଗପସପ । କେଜାଣି କାହିଁକି ମୋର ମନେହେଲା, ସେ ମୋତେ ଖୁବ୍ ଭଲ ପାଉଛନ୍ତି ଓ ତାଙ୍କ ବ୍ୟକ୍ତିଗତ କଥାସବୁ ନିଃସଙ୍କୋଚରେ ମୋ ଆଗରେ ପ୍ରକାଶ କରିଦେଉଛନ୍ତି ।

''ମୁଁ ଏଠି ସମ୍ବଲପୁରରେ ରହେ'', ସେ କହିଲେ । ''କିନ୍ତୁ ମଝିରେ ମଝିରେ ମୋତେ ହିମାଳୟର ଆହ୍ୱାନ ଆସେ । ମୁଁ ଚାଲିଯାଏ ତିନି ଚାରି ମାସ ଋଷିକେଶ, ମଥୁରା, ବୃନ୍ଦାବନ । ତା'ପରେ ପୁଣି ଫେରିଆସେ ।''

ବୃଦ୍ଧ ଗୈରିକ ବସନ ପିନ୍ଧିଥିଲେ । ତାଙ୍କର ଆଧ୍ୟାତ୍ମିକ ଭାବଧାରା ମୋତେ ଆକୃଷ୍ଟ କଲା । ହିନ୍ଦୁଧର୍ମର ଦର୍ଶନ ସମ୍ପର୍କରେ ସେ ମୋତେ ଅନେକ ମୂଲ୍ୟବାନ ତଥ୍ୟ ଶୁଣାଇଲେ । ମନୁଷ୍ୟ ଜୀବନ ଯେ ଏକ ମାୟା- ଆମେ ସମସ୍ତେ ମାୟାଜାଲରେ ପଡ଼ି ଅଯଥା ଛଟପଟ ହେଉଛୁ-ଆତ୍ମୀୟତା ଓ ଆନ୍ତରିକତା ସହିତ ଏହା ସେ ବ୍ୟାଖ୍ୟା କଲେ ।

'':ଆପଣ ପୁଣି କେବେ ହିମାଳୟ ଯିବେ ? ପଚାରିଲି ।''

'':ସେପରି ତ କହିହେବ ନାହିଁ'', ସେ କହିଲେ । ''ଆହ୍ୱାନ ଆସିଲେ ଗୋଟିଏ ମୁହୂର୍ତ୍ତ ସୁଦ୍ଧା ରହିପାରିବନି ଏଠି ।''

ପାରିବାରିକ ଆଲୋଚନା ମଧ ହେଲା । ସଂସାରର ସମସ୍ତ କାର୍ଯ୍ୟ ସେ ପ୍ରାୟ ସମ୍ପୂର୍ଣ୍ଣ କରିସାରିଛନ୍ତି । ଅର୍ଥାତ୍ ସରକାରୀ ଚାକିରୀରୁ ଅବସର ନେବାପରେ ଯଥାର୍ଥରେ ପେନ୍‌ସନ ଲାଭ କରିଛନ୍ତି; ପୁତ୍ରକନ୍ୟାଦିଙ୍କର ବିବାହାଦି ସମ୍ପନ୍ନ କରିସାରିଛନ୍ତି; ପୁତ୍ରମାନେ ଯଥାସମ୍ଭବ ଉତ୍ତମ ଚାକିରୀରେ ମୁକରିର୍ ହୋଇଛନ୍ତି, ଇତ୍ୟାଦି । ଅଧିକତର ନିରାପତ୍ତାପାଇଁ ଅଧ ଡଜନେ ଘର ତୟାର କରି ଭଡ଼ା ମଧ ଦେଇଛନ୍ତି । ''ଅବକାରୀ ବିଭାଗରେ ଚାକିରୀ କରିନଥିଲେ ଘରଗୁଡ଼ିଏ ତୟାର କରି ଭଡ଼ା ଦେଇପାରିନଥାନ୍ତି,'' ସେ କହିଲେ । ଯାହାର ଅର୍ଥ, ସୌଭାଗ୍ୟକୁ ଉପଯୁକ୍ତ ବିଭାଗରେ ଚାକିରୀ କରି ଜୀବନର ସେ ସଦ୍‌ବ୍ୟବହାର କରିଛନ୍ତି ।

ହିନ୍ଦୁଧର୍ମର ଦର୍ଶନ ବ୍ୟାଖ୍ୟାନ କରିବା ସମୟରେ ଯେପରି, ପାରିବାରିକ ସ୍ୱଚ୍ଛଳତା ତଥା ସଫଳତାର କାହାଣୀ ବର୍ଣ୍ଣନା କରିବାରେ ସେହିପରି ସେ ପ୍ରସନ୍ନ ଓ ଆତ୍ମନିର୍ଭରଶୀଳ ମନେହେଉଥିଲେ ।

ତାଙ୍କୁ ସର୍‌ବତ୍ ଇତ୍ୟାଦି ପିଆଇଲାପରେ ମୁଁ ମୂଳକଥାକୁ ଫେରିଆସିଲି । ପଚାରିଲି, ''ମୁଁ ଭଡ଼ାଘରଟିଏ ଖୋଜୁଚି, ଶୁଣିଲି, ଆପଣଙ୍କର ଗୋଟିଏ ଘର ଖାଲି ଅଛି ।''

ସେ ସିଧା କିଛି କହିଲେ ନାହିଁ । ''ତେବେ ମୋର ଘରଭଡ଼ା ଦୁଇଶହ ଟଙ୍କା ଆପଣ ତ ଅଧାପକ ଅଛନ୍ତି । ଅବଶ୍ୟ ଆପଣଙ୍କର ଦରମା କମ୍ ନୁହେଁ । କିନ୍ତୁ ଆପଣଙ୍କ ଚାକିରୀରେ କିଛି ଉପୁରି ପଇସା ନାହିଁ ।''

''ମୁଁ କିନ୍ତୁ ଆପଣଙ୍କ ଘରଭଡ଼ା ନିୟମିତ ଦେଇପାରିବି ।''

''ଆପଣ ସେମିତି କହୁଛନ୍ତି ସିନା, କିନ୍ତୁ ଥରେ ରହିଲାପରେ ଏତେ ଟଙ୍କା ଦେବାରେ ଆପଣଙ୍କର ଅସୁବିଧା ହୋଇପାରେ । ସେଥିପାଇଁ ଅଧାପକମାନଙ୍କୁ ମୁଁ କେବେ ଘରଭଡ଼ା ଦିଏନାହିଁ ।''

ମାୟାବାଦଠାରୁ ଅଧାପକମାନଙ୍କୁ ଘରଭଡ଼ା ନଦେବାର କାରଣ ପର୍ଯ୍ୟନ୍ତ- ଜୀବନର ସକଳ ତଥ୍ୟ ଏତେ ପ୍ରାଞ୍ଜଳ ଭାବରେ ବୁଝାଇପାରୁଥିବା ଜଣେ ପ୍ରବୀଣ ସଚରାଚର ଦୃଷ୍ଟିଗୋଚର ହୁଅନ୍ତି ନାହିଁ ।

''ମୋର ଗୋଟିଏ ପୁଅ ଅଧ୍ୟାପକ ହେବାକୁ ଚାହୁଁଥିଲା । ମୁଁ କିନ୍ତୁ ତାହା କରାଇଦେଲି ନାହିଁ । ବର୍ତ୍ତମାନ ସେ ଡି.ଏସ୍.ପି. । ଭଲରେ ଅଛି ।''

ବୃଦ୍ଧଙ୍କ ସହିତ ଏହାପରେ ମୋର ବୋଧହୁଏ ଆଉ ସାକ୍ଷାତ ହୋଇନଥିଲା । ମୁଁ ତ ଅଳ୍ପଦିନପରେ ସମ୍ବଲପୁର ଛାଡ଼ିଲି, ନୂଆ ଭଡ଼ାଘରଟିଏ ନେବାର ଆଉ ଆବଶ୍ୟକତା ପଡ଼ିଲାନାହିଁ । ବୃଦ୍ଧଙ୍କ ନିକଟକୁ ପୁଣି କେବେ ହିମାଳୟର ଆହ୍ୱାନ ଆସିବ, ତାହା ଜାଣିବାର ସୁଯୋଗ ମୋର ଘଟିନଥିଲା ।



# ଅଧ୍ୟାପକଙ୍କ ବାହାଘର ପାଇଁ ଚିନି

୧୯୬୭ରେ ମୋର ବାହାଘର ସ୍ଥିର ହେଲା । ବେଶ୍ କିଛି ସଂଖ୍ୟକ ପ୍ରସ୍ତାବ କାଟ୍ ଖାଇଯିବା ପରେ ମୋ ନନା ଓ ମୁରବୀ ମାନେ ଧରିନେଇଥିଲେ- ମୋ ବାହାଘର କରାଇ ନ ଦେବା ପାଇଁ ଗ୍ରହ ନକ୍ଷତ୍ରମାନେ ଷଡ଼ଯନ୍ତ୍ର କରିଛନ୍ତି । କିନ୍ତୁ ଶେଷରେ ମୋ ବାହାଘର ସ୍ଥିର ହୁଅନ୍ତେ ସେମାନେ ଅତ୍ୟନ୍ତ ଉତ୍ସାହରେ ବାହାଘର ଆୟୋଜନରେ ଲାଗିପଡ଼ିଲେ ।

ବର୍ତ୍ତମାନ ସବୁଠାରୁ ବଡ଼ ସମସ୍ୟା ହେଲା ଚିନି । ସେତେବେଳେ ପୁରୀ ସହରରେ-ସମଗ୍ର ଓଡ଼ିଶାରେ ହୁଏତ-କୌଣସି କାରଣରୁ ଚିନି ଥିଲା ଏକାନ୍ତ ଦୁଷ୍ପ୍ରାପ୍ୟ । କଳାବଜାରରେ ଅବଶ୍ୟ ଚିନି ମିଳୁଥିଲା ଯଥେଷ୍ଟ । କିନ୍ତୁ ଖୁବ୍ ଚଢ଼ା ଦରରେ । ଅଥଚ ଚିନି ବ୍ୟତିରେକେ ଭୋଜି ଯେପରି ଅସମ୍ଭବ, ଭୋଜି ବ୍ୟତିରେକେ ବାହାଘର ସେହିପରି ଅସମ୍ଭବ ।

ଚିନିର ଅଭାବ ଆମ ସାମାଜିକ ଜୀବନକୁ ମଧ୍ୟ ଦୋହଲାଇ ଦେଇଥିଲା । ଆମ ସାହିର ପ୍ରମୁଖ ଚା ଦୋକାନ ମାଲିକ ଶ୍ରୀ ଚେମା ସାହୁ ଏହିପରି ସିଦ୍ଧାନ୍ତଟିଏ ନେଇଥିଲେ ଯେଉଁମାନେ ତାଙ୍କ ଦୋକାନରେ ଚା' ଖାଇବାକୁ ଚାହାନ୍ତି, ସେମାନେ ନିଜେ ସାଙ୍ଗରେ ଚିନିଟିକିଏ ଆଣିଥିବେ । ଚେମା ସାହୁଙ୍କ ଦୋକାନରେ ସକାଳ ସଞ୍ଜରେ ଭିଡ଼ର କାରଣ ଚା' ଖାଇବା ପାଇଁ ଯେତେ ନୁହେଁ, ତା'ଠାରୁ ଅଧିକ ଦରକାରୀ ଅଦରକାରୀ ବିଷୟରେ ଗପ ଜମାଇବା । ଅତଏବ ସାହିର ମୁଖିଆମାନେ ଚିନିପୁଡ଼ିଆଟିଏମାନ ଧରି ଯଥା ସମୟରେ ହାଜର ହେଉଥିଲେ ଚେମା ସାହୁଙ୍କ ଦୋକାନରେ ।

ଦିନେ ମଧ୍ୟାହ୍ନରେ ସାଇକେଲରେ ମୁଁ ବାହାରିଲି ଚିନି ଯୋଗାଡ଼ କରିବା ପାଇଁ । ସ୍ଥାନୀୟ ସପ୍ଲାଇ ଅଫିସ ବାହାଘର, ବ୍ରତଘର ଇତ୍ୟାଦି ପାଇଁ ସ୍ୱତନ୍ତ୍ର ଚିନି କୋଟା ଯୋଗାଇ ଦେବାର ବ୍ୟବସ୍ଥା ରହିଥିଲା ।

କୌଣସି ସରକାରୀ ଅଫିସକୁ ଯିବା ପାଇଁ ମୋର ସବୁବେଳେ ଭୟ ଓ ଘୃଣା । କାରଣ ଏହି ଅଫିସଗୁଡ଼ିକରେ ସହଜରେ କାମ ତ ହୁଏ ନାହିଁ; ଅନେକ ସମୟରେ ଅଶାଳୀନ ବ୍ୟବହାର ମଧ୍ୟ ସହିବାକୁ ପଡ଼େ ।

ପୁରୀ ସମୁଦ୍ରକୂଳରେ ଏକ ପୁରୁଣା ଅପରିଷ୍କାର କୋଠାରେ ଚାଲିଥାଏ ସପ୍ଲାଇ ଅଫିସ । ପାନଛେପ, ଛିଣ୍ଡାକାଗଜ, ଗୁଲିଗପ, କାମ ନ କରିବା ପରିବେଶ । ଅନୁସନ୍ଧାନ ପରେ ଜଣେ ଯୁବକଙ୍କ ନିକଟରେ ଉପସ୍ଥିତ ହେଲି । ସେ ମୋତେ ବସିବାକୁ ମଧ୍ୟ କହିଲେ ନାହିଁ । ଆମର ସଂକ୍ଷିପ୍ତ କଥାବାର୍ତ୍ତା-

'ବାହାଘର ପାଇଁ ମୋର ତିରିଶ କିଲୋ ଚିନି ଦରକାର ହେଉଛି । ମିଳିପାରିବ କି ?

'ନା । ବାହାଘର କୋଟା ଚିନି ସରିଯାଇଛି । ଆପଣ ଖୋଲା ବଜାରରୁ କିଣିପାରନ୍ତି ।'

ଫେରିଲି । ନିରାଶ ହେବାର କାରଣ ନ ଥିଲା । ଏହିପରି ହେବ ବୋଲି ମୁଁ ଜାଣିଥିଲି ।

ତା'ପରଦିନ ସକାଳେ କେହି ଜଣେ ମୋତେ ଖୋଜିଲେ । ମୁଁ ଘର ବାହାରକୁ ଆସିଲି ।

ମୋ ସମ୍ମୁଖରେ ଠିଆ ହୋଇଥିଲେ ଜଣେ ଯୁବକ । ମୋତେ ଭକ୍ତିପୂର୍ଣ୍ଣ ନମସ୍କାରଟିଏ କରି ବିନା ଗୌରଚନ୍ଦ୍ରିକାରେ କହିଲେ-

'ଆଜ୍ଞା, ମୋର ଭୁଲ ହୋଇଯାଇଛି । ଆପଣଙ୍କର କେତେ କିଲୋ ଚିନି ଦରକାର ?'

ମୁଁ ମୋର ଆବଶ୍ୟକତା କହିଲି । ମୋତେ ଆଉ ସପ୍ଲାଇ ଅଫିସ ଯିବାକୁ ପଡ଼ିଲା ନାହିଁ, ସେ ନିଜେ ଟଙ୍କା ନେଇ ଆମ ଘରେ ଚିନି ପହଞ୍ଚାଇ ଦେଲେ ।

ଏପରି ଘଟିବାରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା । ଯେଉଁ ଯୁବକ ମୋତେ ଚିନି ମିଳିପାରିବ ନାହିଁ ବୋଲି କହିଥିଲେ, ସେଦିନ ସନ୍ଧ୍ୟାରେ ସେ ଆବିଷ୍କାର କଲେ- ମୁଁ ହିଁ ତାଙ୍କର ଇଂରାଜୀ ଅଧ୍ୟାପକ ।

(ସେତେବେଳେ ମୁଁ ଥାଏ ପୁରୀ ସାନ୍ଧ୍ୟ କଲେଜରେ । ସେ ଏହି କଲେଜର ଛାତ୍ର ହୋଇଥିବାରୁ ସନ୍ଧ୍ୟାରେ ତାଙ୍କର ଭାବାନ୍ତର ସୃଷ୍ଟି ହେବା ସ୍ୱାଭାବିକ ।) ଥରେ

ନୁହେଁ, ବହୁବାର ଘଟିଛି ଏହିପରି । ଅଧ୍ୟାପକମାନଙ୍କ ସମ୍ପର୍କ ଛାତ୍ରମାନଙ୍କ ସଙ୍ଗେ; ବହି, ପାଠାଗାର, ପରୀକ୍ଷାଖାତା ଇତ୍ୟାଦିକୁ ନେଇ ସେମାନଙ୍କ ଜୀବିକା ଓ ସଂସାର । ଅମଲାମାନଙ୍କ ପରି ସେମାନଙ୍କର ତଥାକଥିତ କ୍ଷମତା ନଥାଏ । ପିଅନ, ଗାଡ଼ି ଇତ୍ୟାଦି ସ୍ୱପ୍ନ । ସରକାରୀ ଦପ୍ତରମାନଙ୍କର କାମ କରାଇନେବା ସେମାନଙ୍କ ପକ୍ଷରେ ସହଜ ନୁହେଁ । ଅଧ୍ୟାପକମାନଙ୍କ ସମ୍ପର୍କରେ ମୋଟାମୋଟି ଧାରଣାଟିଏ ଥାଏ ଯେ ସାଂସାରିକ କାର୍ଯ୍ୟରେ ପ୍ରାୟତଃ ଅପାରଗ ଓ ନିରୀହ । ଗୁରୁକୁଳ ଆଦର୍ଶ କଥା ମଧ୍ୟ କେବେ କିପରି କେହି କେହି କହିପକାନ୍ତି । ଯାହାର ଅର୍ଥ ଅଧ୍ୟାପକମାନେ ସାଧୁ ଓ ଆଦର୍ଶବାଦୀ ହେବା ଉଚିତ । ଧନ, ସମ୍ପତ୍ତି, କ୍ଷମତା, ପ୍ରତିପତ୍ତିରୁ ସେମାନଙ୍କୁ ମିଳିବ କ'ଣ ? ସେସବୁର ଦାୟିତ୍ୱ ତ ସରକାରୀ ଅମଲାମାନେ ନେଇଛନ୍ତି ।

କିନ୍ତୁ ଅଧ୍ୟାପକମାନେ ଅମଲାମାନଙ୍କ ତୁଳନାରେ କମ୍ କ୍ଷମତାର ଅଧିକାରୀ ବୋଲି ସବୁବେଳେ କୁହାଯାଇପାରିବ ନାହିଁ । ଚିନି ନ ମିଳୁଥିବା ସମୟରେ ଜଣେ ଅଧ୍ୟାପକଙ୍କ ବାହାଘର ପାଇଁ କେତେ ସହଜରେ ଚିନିର ଆୟୋଜନ ହୋଇଗଲା, ଦେଖିଲେ ତ ।

ବାହାଘରରେ ଚିନି ଯୋଗାଇଦେବା ପରେ ପୁରୀ ସାନ୍ଧ୍ୟ କଲେଜରେ ସେହି ଛାତ୍ରଙ୍କ ସହିତ ମୋର କୌଣସି ସମ୍ପର୍କ ରହିଲା ନାହିଁ । ତାଙ୍କର ସେହି ସାହାଯ୍ୟ ପାଇଁ ମୁଁ ତାଙ୍କ ନିକଟରେ ଋଣୀ । କିନ୍ତୁ ଛାତ୍ରମାନଙ୍କର ସବୁ ସାହାଯ୍ୟର ସ୍ୱରୂପ ଏହି ଆକାର ଧାରଣ କରି ନଥାଏ । ବହୁ ସମୟରେ ଅଧ୍ୟାପକ- ଛାତ୍ରମାନଙ୍କର ସମ୍ପର୍କ ସାହାଯ୍ୟ-ପ୍ରତି ସାହାଯ୍ୟ ଉପରେ ଆଧାରିତ ହୋଇଥାଏ । ଅଧ୍ୟାପକମାନଙ୍କ ଅଧ୍ୟାପକୀୟ-ଏପରି କି ସଂସାରିକ ଜୀବନର ସଫଳତା ଅନେକ ପରିମାଣରେ ସେମାନଙ୍କର ଛାତ୍ରଛାତ୍ରୀ ତଥା ସେମାନଙ୍କ ସହିତ ସମ୍ପର୍କ ଦ୍ୱାରା ନିୟନ୍ତିତ ହୋଇଥାଏ । ଦେଖନ୍ତୁ ଗୋଟିଏ ଉଦାହରଣ:

ମୋତେ କବିତା ବହିଟିଏ ଉପହାର ଦେବା ପାଇଁ ଆସିଥିଲେ ଜଣେ ଅଧ୍ୟାପକ ବନ୍ଧୁ । ବହିଟି ସେ ନିଜେ ପ୍ରକାଶ କରିଥିଲେ ।

ବହିଟି ପ୍ରକାଶ କରିବାକୁ ଏତେ ଅର୍ଥ କାହୁଁ ପାଇଲେ ପ୍ରଶ୍ନ କରନ୍ତେ ସେ କହିଲେ, 'ଜଣେ ଅଣଓଡ଼ିଆ ବ୍ୟବସାୟୀ ଟଙ୍କା ଯୋଗାଇ ଦେଲେ । ଏକ ସମୟରେ ସେ ଥିଲେ ମୋର ଛାତ୍ର ।'

- ଅଣଓଡ଼ିଆ ବ୍ୟବସାୟୀ ଜଣେ ଓଡ଼ିଆ କବିତା ପ୍ରକାଶ ପାଇଁ ଆର୍ଥିକ ସାହାଯ୍ୟ ଦେବେ ନାହିଁ ବୋଲି କୌଣସି ବାରଣ ନାହିଁ । ତେବେ କଥାଟାଟିକିଏ ଅସ୍ୱାଭାବିକ

ମନେ ହୁଏ । ମୋର ତେଣୁ ଅନୁମାନ-ଏହି ଅଧ୍ୟାପକ କୌଣସି ସମୟରେ ଉକ୍ତ ବ୍ୟବସାୟୀଙ୍କୁ କିମ୍ବା ତାଙ୍କର ସମ୍ପର୍କୀୟଙ୍କୁ କିଛି ଗୋଟାଏ ଗୁରୁତର ସାହାଯ୍ୟ କରିଛନ୍ତି । ଯେପରି-ପରୀକ୍ଷାଖାତାରେ ମାର୍କସ୍ ବଢ଼ାଇବା କିମ୍ବା ମାଲପ୍ରକ୍ଟିସରୁ ରକ୍ଷା କରିବା । ତେଣୁ ଓଡ଼ିଆ କବିତା ପ୍ରକାଶ କରିବାରେ ଅଣ ଓଡ଼ିଆ ବ୍ୟବସାୟୀଙ୍କ ସାହାଯ୍ୟ ।

ତେବେ ମୋ ଅନୁମାନ ସମ୍ପୂର୍ଣ୍ଣ ଭୁଲ ହୋଇପାରେ । କୌଣସି ଉଦ୍ଦେଶ୍ୟ ନ ରଖି ବ୍ୟବସାୟୀ ଛାତ୍ରମାନେ ମଧ୍ୟ ଅଧ୍ୟାପକଙ୍କୁ ସାହାଯ୍ୟ କରିବାର ଦୃଷ୍ଟାନ୍ତ ବିରଳ ନୁହେଁ । ଶୁଣନ୍ତୁ-ଭୁବନେଶ୍ୱରର ମାଷ୍ଟରକାଣ୍ଟିନ ଛକ ନିକଟରେ ମୁଁ ଠିଆ ହୋଇଥାଏ ।

ହଠାତ୍ ଦେଖିଲି ସେ କତୁ ଆସୁଛନ୍ତି ମୋର ଗୁରୁ ପ୍ରଫେସର ପ୍ରଫୁଲ୍ଲ କୁମାର ପତି । ତାଙ୍କୁ ନମସ୍କାର କଲି । ସେ ମୋ ନିକଟରେ ଆସି ଠିଆ ହେଲେ। ପୂର୍ବରୁ ପ୍ରସ୍ତୁତ ରହିଥିବା ପରି କୁଆଡୁ ଆସି ଆବିର୍ଭୂତ ହେଲେ ମୋର ଜଣେ କନିଷ୍ଠ ବନ୍ଧୁ । ସେ ମଧ୍ୟ ପ୍ରଫେସର ପତିଙ୍କ ଛାତ୍ର । ତାଙ୍କୁ ଭକ୍ତିପୂର୍ଣ୍ଣ ନମସ୍କାର ଜଣାଲେ । କହିଲେ-''ସାର, ଟିକିଏ ଚା'ଖାଇବେ ଆସନ୍ତୁ ।''

ପ୍ରଫେସର ପତି ମୋତେ ଚାହିଁଲେ । 'ଆସନ୍ତୁ', ମୁଁ କହିଲି । ଆମେ ପ୍ରବେଶ କଲୁ ନିକଟସ୍ଥ ରେଷ୍ଟୋରାଁରେ ।

ପ୍ରଫେସର ପତି ଓ ମୁଁ ବସିଲୁ ଗୋଟିଏ ଟେବୁଲ ପାଖରେ । ମୋର ବନ୍ଧୁ ଗଲେ ଦୋକାନୀକୁ କିଛି ଜଳଖିଆ ଓ ଚା'ବରାଦ ଦେବା ପାଇଁ ।

ପ୍ରଫେସର ପତି ଆପାତତଃ ଜଣେ ଗମ୍ଭୀର ବ୍ୟକ୍ତି । କିନ୍ତୁ ତାଙ୍କ ଭଳି ପରିହାସ ପ୍ରିୟ ବ୍ୟକ୍ତି ଖୁବ୍ ବିରଳ । ମୋତେ ପଚାରିଲେ, ''ତା ନାଁ କ'ଣ ?'' ମୁଁ ନାମ କହିଲି । ''ସେ ବର୍ତ୍ତମାନ କଣ କରୁଛି ?'' ମୁଁ ଉତ୍ତର ଦେଲି, ବ୍ୟବସାୟ ।'

ମୋ ଉତ୍ତରରେ ପ୍ରଫେସର ପତି ଠୋ ଠୋ ହସିଉଠିଲେ । ସେ ଏତେ ଜୋରରେ ହସିଲେ ଯେ ରେଷ୍ଟୋରାଁର ସମସ୍ତେ ଆମ ଅଡ଼କୁ ଚାହିଁଲେ । କହିଲେ- ପ୍ରଫେସର ପତି, 'ବ୍ୟବସାୟ କରୁଛି, ଅଥଚ ମୋତେ ଚା' ଜଳଖିଆ ଖୁଆଉଛି । ଏଇଟା ହାତରେ ବ୍ୟବସାୟ ହେବନାହିଁ ।

ଏହା ପରେ ଉକ୍ତ ବନ୍ଧୁ ଜଣକ ଆମ ନିକଟକୁ ଆସିଲେ ଓ ଆମେ ଚା' ଜଳଖିଆ ଇତ୍ୟାଦି ଖାଇତାଙ୍କୁ ଧନ୍ୟବାଦ ଜଣାଇ ଯଥାରୀତି ପ୍ରସ୍ଥାନ କଲୁ । କହିବା ବାହୁଲ୍ୟ, ବନ୍ଧୁଙ୍କ ଏତାଦୃଶ ଆଚରଣ ପଛରେ କୌଣସି ଉଦ୍ଦେଶ୍ୟ ନିହିତ ନ ଥିଲା । ବେଳେ ବେଳେ କିନ୍ତୁ ବାହାଘର ପାଇଁ ଚିନି ଯୋଗାଇଦେବା ବା ବଜାରରେ ଚା ଜଳଖିଆ

ଭଳି ସରଳ ସାହାଯ୍ୟମାନ ଅଧ୍ୟାପକ ଜୀବନରେ ଜଟିଳତା ସୃଷ୍ଟି କରିପାରେ । ଅନ୍ୟ ସମୟରେ ନ ହେଲେ ମଧ୍ୟ ବିଶ୍ୱବିଦ୍ୟାଳୟ ପରୀକ୍ଷା ପରେ ଚିହ୍ନା ଜଣା ଅଧ୍ୟାପକମାନଙ୍କୁ ଖୋଜନ୍ତି ସମସ୍ତେ ।

ଛାତ୍ରଛାତ୍ରୀମାନେ-ବିଶେଷତଃ ସେମାନଙ୍କ ଅଭିଭାବକମାନେ । ପଚିଶି ତିରିଶି ବର୍ଷଧରି ଦେଖା ହୋଇ ନଥିବା ବନ୍ଧୁମାନେ ଅନ୍ୟ ଗ୍ରହରୁ ଆସିବାପରି କୁଆଡୁ ଆସି ପହଞ୍ଚିଯା'ନ୍ତି ଘରେ । (ସେମାନଙ୍କ ଚେହେରା ଦେଖିଲେ ବୁଝିହୁଏ-ସମୟ ବହୁ ଆଗକୁ ଗଡ଼ିଯାଇଛି ଯାଭିତରେ ।)

ସେମାନେ ଆମ ଛାତ୍ରଜୀବନ ଆଲୋଚନା କରନ୍ତି; ଚା' ଇତ୍ୟାଦି ଖାଆନ୍ତି । କିନ୍ତୁ ସେମାନେ ଆସିଥାନ୍ତି ସେଥିପାଇଁ । 'ମୋରପୁଅ ଏଥର ବି.ଏ. ପରୀକ୍ଷା ଦେଇଛି । ଇଁରାଜୀ ଅନର୍ସ । ରୋଲନମ୍ବରଟା ଟିକେ ରଖିଥାଅ... ।'

ରୋଲ ନମ୍ବର ରଖିଥିବାକୁ ହୁଏ । ତା' ପରେ କଣ ହୁଏ ଭିନ୍ନ କଥା । ସମସ୍ୟାର ଜଟିଳତା ସମ୍ପର୍କରେ ଆଉ ଟିକିଏ ସ୍ପଷ୍ଟୀ କରଣ;

ଦିନେ ସକାଳେ ଆମ ଘରେ ଆସି ପହଞ୍ଚିଲେ ଧୋତି-ପଞ୍ଜାବୀ-ପରିହିତ ଅବସାପ୍ରାପ୍ତ ଜଣେ ବୃଦ୍ଧ । ମୁଁ କବାଟ ଖୋଲନ୍ତେ, ମୋତେ ବଡ଼ ପାଟିରେ କହିଲେ, 'ରିକ୍ସାବାଲାଟାକୁ ଟିକିଏ ଭଡ଼ା ଦେଇଦିଅନ୍ତୁ । ମୋ ପାଖରେ ରେଜା ନାହିଁ ।'

ବହୁ ଦିନ ପରେ ଆସିଥିଲେ ଆମ ଘରକୁ । ସକାଳୁ ସ୍ନାନାଦି ସାରି ସେ ତେଜିୟାନ ଓ କର୍ମଚଞ୍ଚଳ ଦିଶୁଥିଲେ । କୌଣସି ବାବାଙ୍କର ଭକ୍ତ ହୋଇଥିବାରୁ ଭଗୀର ଆତ୍ମବିଶ୍ୱାସ ତାଙ୍କ ମୁଖମଣ୍ଡଳରେ ଚିକ୍ ଚିକ୍ କରୁଥିଲା ।

କହିଲେ, 'ଭୋଳିବାବୁଙ୍କୁ କହୁଥିଲେ, ଆପଣ ଏପରି ଛୋଟ ଘରଟାରେ ଆଉ ରହନ୍ତୁ ନାହିଁ । ପିଲାମାନେ ବଡ଼ ହୋଇ ଗଲେଣି । ଆପଣ ବଡ଼ ସରକାରୀ କ୍ୱାଟର୍ସ ନେଇନିଅନ୍ତୁ । (ଭୋଳିବାବୁ ଜଣେ ବଡ଼ ଅଫିସରଙ୍କ କାଳ୍ପନିକ ନାମ ।)

ସେତେବେଳେ ବାଣୀବିହାରରେ ମୁଁ ଓ ମୋ ପରିବାର ଦୁଇ ବଖୁରିଆ ଫ୍ଲାଟ କ୍ୱାଟର୍ସରେ ରହୁଥିଲୁ । ସେପରି ରହିଆସିଥିଲୁ ପ୍ରାୟ ବାରବର୍ଷ । ମୋର ସ୍ତ୍ରୀ ସରକାରଙ୍କ ଅଧୀନରେ ଚାକିରୀ କରୁ ଥିବାରୁ ସରକାରୀ କ୍ୱାଟର୍ସ ପାଇବାର ଯୋଗ୍ୟତା ଆମର ଅବଶ୍ୟ ଥିଲା । ଆମକୁ ଅଚିରେ ବଡ଼ କ୍ୱାଟର୍ସଟିଏ ଯୋଗାଇଦେବାର ସାମର୍ଥ୍ୟ ଥିଲା ଭୋଳିବାବୁଙ୍କର ।

ଏତେଦିନ ରହିଲୁଣି ଏ ଘରେ । ଆଉ କାହିଁକି ବଦଳାଇବୁ ? ମୁଁ କହିଲି । 'ଏଠି ରହିଲେ ଡିପାର୍ଟମେଣ୍ଟ ପାଖ । ତେବେ ୟା ଭିତରେ ଆମେ ଥ୍ରି ଆର ଘରଟିଏ ପାଇବୁ ।

ସେ ଆପତ୍ତି କଲେ ନାହିଁ । ପୂର୍ବପରି ତେଜିୟାନ ସ୍ୱରରେ କହିଲେ, 'ମୋ ପାଇଁ କିଛି କରନ୍ତୁ ନାହିଁ । ଯଦି ନିହାତି କିଛି କରିବେ, ତେବେ ଖାଲି କପେ କଡ଼ା ଚା' ।'

ବିଭିନ୍ନ ବିଷୟ ପଡ଼ିଲା । ପିଲାମାନଙ୍କ ପଢ଼ାପଢ଼ି କଥା, ମୋର ବିଷୟ-ସମ୍ପତ୍ତି କଥା । ବର୍ତ୍ତମାନ ତାଙ୍କର ପ୍ରସ୍ତାବ ''ଆପଣ ଭୁବନେଶ୍ୱରରେ ଘର ଖଣ୍ଡିଏ କରିନାହାଁନ୍ତି ଏ ଯାଏଁ । ହାଉସିଂବୋର୍ଡ଼ ଘର ଖଣ୍ଡିଏ ନେଇଯାଆନ୍ତୁ । ଭୋଳିବାବୁ ସେହି କଥା ମୋତେ ପଚାରୁଥିଲେ ।''

ଭୋଳିବାବୁ ମୋର ପାରିବାରିକ ନିରାପତ୍ତା ସମ୍ପର୍କରେ ଏତେ ଚିନ୍ତିତ ବୋଲି ମୁଁ ଆଗରୁ ଜାଣି ନଥିଲି । କହିଲି 'ଦେଖନ୍ତୁ, ମୋତେ ହାଉସିଂବୋର୍ଡ଼ ଘରଟିଏ ମିଳିଥିଲା । କିନ୍ତୁ ସବୁ ଟଙ୍କା ଏକାକାଳୀନ ଦେବାକୁ କୁହାଯାଇଥିଲା । ଇନଷ୍ଟାଲମେଣ୍ଟ ଦେବା ପାଇଁ ମୁଁ ଦରଖାସ୍ତ ଦେଲି । କିନ୍ତୁ ଘରଟା କ୍ୟାନସେଲ ହୋଇଗଲା । ଭୋଳିବାବୁ ସେ କଥା ଜାଣନ୍ତି ।'

'ଆହା, ଛାଡ଼ନ୍ତୁ ସେ କଥା... ।' ବର୍ତ୍ତମାନ କହିଲେ ଅବସରପ୍ରାପ୍ତ ବୃଦ୍ଧ । (ୟା ଭିତରେ ତାଙ୍କ ଆଗରେ ଥୁଆହୋଇ ସାରିଥିଲା ବାମ୍ପଉଠା ଚା' କପ୍‌ଟିଏ । ଚା' କପ୍‌କୁ ଓଠପାଖକୁ ନେଉ ନେଉ କହିଲେ ସେ)... । 'ଆପଣ ସରକାରଙ୍କଠାରୁ ପ୍ଳଟ ଖଣ୍ଡିଏ ନେଇ ନିଜର ରୁଚି ମୁତାବକ୍ ଘରଟିଏ କରନ୍ତୁ । ଆପଣ ଆପ୍ଲାଇ କରନ୍ତୁ । ଭୋଳିବାବୁ ସେ କଥା ବୁଝିବେ ।'......

ଭୋଳିବାବୁଙ୍କ ପ୍ରାସାଦରୁ ଏବେ ସହଜରେ ଭୁବନେଶ୍ୱରରେ ସରକାରୀ ପ୍ଳଟଟିଏ ମିଳିଯିବ, ଏଥିରେ ମୋର ସନ୍ଦେହ ରହିଲା ନାହିଁ । କହିଲି ପ୍ଳଟ ପାଇଁ ମୋର ଦରଖାସ୍ତ ତ ଅଛି ।'

'ମୋତେ ନମ୍ବରଟା ଦିଅନ୍ତୁ ।'

ଅଗତ୍ୟା ଫାଇଲରୁ ନମ୍ବର କାଢ଼ି ତାଙ୍କୁ ଦେଲି ।

ବର୍ତ୍ତମାନ ସେ ହସିଲେ । (ସେ ସଚରାଚର ହସନ୍ତି ନାହିଁ । ହସିଲା ବେଳେ କେଜାଣି କାହିଁକି ସେ ଟିକିଏ ଭୟଙ୍କର ମନେ ହୁଅନ୍ତି ।) କହିଲେ, 'ହଁ, ଭୋଳିବାବୁଙ୍କ

ପୁଅ ଏଥର ଏମ:ଏ ପରୀକ୍ଷା ଦେଇଛି । ଆପଣଙ୍କର ତ ଛାତ୍ର ସେ, ଆପଣ ଜାଣନ୍ତି । କେମିତି କରିବ ସେ ପରୀକ୍ଷାରେ ?'

ସେ ତ ଖୁବ୍ ଭଲ ଛାତ୍ର..., ମୁଁ କହିଲି । 'ନିଶ୍ଚୟ ଭଲ କରିବ ।'

'ନା ମ. ସେମିତି କହିଲେ ହେବ ।' କହିଲେ ଅବସର ପ୍ରାପ୍ତ ବୃଦ୍ଧ ଓ ହସିଲେ ।' ''ସେ ଯେମିତି ଫାଷ୍ଟକ୍ଲାସ୍ ପାଏ ନା !'' 'ସେ ତା ମେରିଟ୍‌ରେ ଫାଷ୍ଟକ୍ଲାସ ପାଇପାରେ ।' ମୁଁ କହିଲି ।

'ଓ ହୋ.... କ'ଣ ଏମିତି କହୁଛନ୍ତି ମ... ।'

ତାଙ୍କର ସ୍ୱର ବର୍ତ୍ତମାନ ବିଶ୍ୱସ୍ତ ଓ ନୁଆଣିଆ । (ତା କପଟି ଖାଲି ।) ....ଦେଖନ୍ତୁ, ସେ ଯେମିତି ହେଲେ ଫାଷ୍ଟକ୍ଲାସ ପାଇବ । ଭୁବନେଶ୍ୱରରେ ପ୍ଲଟ ପାଇବା କଥା ଭୋଳିବାବୁ ବୁଝିବେ ।

ବୃଦ୍ଧ ଉଠିଲେ । ଅନ୍ୟତ୍ର କାମ ତାଙ୍କୁ ଅପେକ୍ଷା କରିଥିବ ନିଶ୍ଚୟ । ଗଲାବେଳେ ଅବଶ୍ୟ ମୋତେ ସେ ରିକ୍ସା ଭଡ଼ା ମାଗି ନ ଥିଲେ ।

ଭୋଳିବାବୁଙ୍କ ପୁତ୍ର ମୋର ଜଣେ ପ୍ରିୟ ଛାତ୍ର । କିନ୍ତୁ ତା'ର ଦୁର୍ଭାଗ୍ୟ ସେ ଫାଷ୍ଟକ୍ଲାସ ପାଇଲା ନାହିଁ । ସରକାରୀ ପ୍ଲଟଟିଏ ପାଇବାର ଆଶା ତେଣୁ ମୁଁ ଛାଡ଼ିଦେଲି । ଭୋଳିବାବୁଙ୍କ ପୁତ୍ର ଫାଷ୍ଟକ୍ଲାସ ପାଇଥିଲେ ମୋତେ ସରକାରୀ ପ୍ଲଟଟିଏ ମିଳିଥାନ୍ତା- ୨+୨=୪ ଯୁକ୍ତି ଏପରି କ୍ଷେତ୍ରରେ ପ୍ରୟୋଗ କରିବା କିନ୍ତୁ ନିରାପଦ ନୁହେଁ ।

'ତୁମେ ଆମ ପାଇଁ ଏଇୟା କରିଦେଲେ ଆମେ ତୁମ ପାଇଁ ସେଇୟା କରିଦେବୁ'-ଏଇ ନିୟମର ଫାଶଟି ସମସ୍ତଙ୍କ ବେକ ପାଖରେ ଝୁଲୁଛି ସବୁବେଳେ- ଅଧ୍ୟାପକମାନଙ୍କ ବେକ ପାଖରେ ତ ନିଶ୍ଚୟ । ବର୍ତ୍ତମାନ ଆପଣ ଭେଟିଥିବା ବୃଦ୍ଧଙ୍କ ପରି ଅନେକ ଏଇ ଫାଶଟିମାନ ଧରି ଆପଣଙ୍କ ଘରେ ଉପସ୍ଥିତ ହୁଅନ୍ତି ବେଳେ ବେଳେ । ସେମାନଙ୍କୁ ଆପଣ ସ୍ୱାଗତ କରିବେ କି ନା ତାହା ଆପଙ୍କ ବିଚାର, ସ୍ୱାର୍ଥ ଓ ବିବେକ ଉପରେ ନିର୍ଭର କରେ ।

ଅନେକ ସମୟରେ କିନ୍ତୁ ଆପଣ ସ୍ୱାଗତ କରନ୍ତି ସେଇ ଫାଶକୁ ଆପଣଙ୍କ ଅଜାଣତରେ । ଦେଖନ୍ତୁ ଆଳିବାବୁଙ୍କ କଥା-

ଜଣେ ଅଧ୍ୟାପକ ବନ୍ଧୁଙ୍କର ପିଏଚ.ଡି. ରେଜିଷ୍ଟ୍ରେସନ ନମ୍ବରଟି ହଜିଯାଇଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟ ଅଫିସକୁ ସେ ଦରଖାସ୍ତ କରିଥାନ୍ତି ରେଜିଷ୍ଟ୍ରେସନ ଚିଠିର ଆଉ ଗୋଟାଏ କପି ଦେବା ପାଇଁ । ଦାୟିତ୍ୱରେ ଥିବା କିରାଣି ବାବୁଙ୍କୁ ସେ

ବାରମ୍ବାର ସାକ୍ଷାତ କରିସାରିଥିଲେ ସୁଦ୍ଧା ଚିଠିଟି ତାଙ୍କୁ ମିଳିପାରୁ ନଥାଏ ।

ଅଧ୍ୟାପକ ବନ୍ଧୁ ଦିନେ ମୋ ନିକଟକୁ ଆସି ମୋତେ ଏକଥା କହିଲେ । ଉତ୍କଳ ବିଶ୍ୱବିଦ୍ୟାଳୟର ଶାସନକଳଟି କିପରି ହୁଗୁଳା, ମୋତେ ଅଜଣା ନାହିଁ । ମୁଁ ଯେ କେତେଦୂର ତାଙ୍କୁ ସାହାଯ୍ୟ କରିପାରିବି, ସେଥିରେ ମୋର ସନ୍ଦେହ ଥିଲା । ତଥାପି ପିଅନକୁ ଡାକି ରେଜିଷ୍ଟ୍ରେସନ ଦାୟିତ୍ୱରେ ଥିବା ଆଳିବାବୁଙ୍କ ନିକଟକୁ ପଠାଇଲି । ଚିଠିଟି ପଠାଇଦେବା ପାଇଁ ମୁଁ ଅନୁରୋଧ କରିଛି ବୋଲି ଖବର ଦେଲି ।

ପ୍ରାୟ ଦଶମିନିଟ ପରେ ମୋ ରୁମରେ ପ୍ରବେଶ କଲେ ଆଳିବାବୁ । ପୃଥୁଳକାୟ କିନ୍ତୁ ବେଶ ଦ୍ରୁତଗତିରେ ସେ ଆସିଥିଲେ ବୋଲି ମୋର ମନେ ହେଲା । ମୋ ଉଦ୍ଦେଶ୍ୟରେ ନମ୍ର ନମସ୍କାରଟିଏ କରି କହିଲେ, 'ନିଅନ୍ତୁ ସାର ।'

ଏତେ ଶୀଘ୍ର ରେଜିଷ୍ଟ୍ରେସନ ଚିଠିଟି ପାଇ ମୋ ବନ୍ଧୁ ଅତ୍ୟନ୍ତ ଆପ୍ୟାୟିତ ହେଲେ । 'ଯାହା ହେଉ ଆପଣ ଚିଠିଟି ଆଣିଦେଲେ ।' ମୁଁ ଆଳିବାବୁଙ୍କୁ କହିଲି ଓ ତାଙ୍କ ପାଇଁ ଚା' ମଗାଇଲି ।

'ଆପଣ କହିଛନ୍ତି ଯେତେବେଳେ, ସବୁ କାମ ପଛରେ ପକାଇ ଫାଇଲ ଖୋଜି ଚିଠିଟି ବାହାର କଲି, ସେ କହିଲେ ।

ଆମ ବିଶ୍ୱବିଦ୍ୟାଳୟର କିରାଣି ବନ୍ଧୁମାନେ ମୋତେ ଏତେ ସମ୍ମାନ ଦିଅନ୍ତି ଜାଣି ଯତ୍ ପରୋନାସ୍ତି ଆନନ୍ଦିତ ହେଲି । ମୋ ବ୍ୟକ୍ତିତ୍ୱ ଓ ପ୍ରଭାବ ଯେ ଏପରି ମୋର ଅଧ୍ୟାପକ ବନ୍ଧୁ ନିଶ୍ଚୟ ବୁଝିପାରିଥିବେ ।

ଚା'ଓ ଗପସପ ପରେ ଆଳିବାବୁ ଯିବା ପାଇଁ ଅନୁମତି ଲୋଡ଼ିଲେ । ଯିବା ଆଗରୁ ମୋତେ ନମସ୍କାର କରି ମୋ ହାତରେ ଗୁଞ୍ଜିଦେଲେ ଛୋଟ କାଗଜଟିଏ । 'ପୁଅ କଥା ଦେଖିବେ ।'

କାଗଜଟିରେ ରୋଲ ନମ୍ବରଟିଏ ଥିଲା । ସେତେବେଳେ କୌଣସି ପରୀକ୍ଷା ଖାତାର ମୂଲ୍ୟାୟନ କରୁଥିଲି । ଆଳିବାବୁଙ୍କର କୌଣସି ସତ୍ୟ ବା କାଳ୍ପନିକ ପୁଅର ଭାଗ୍ୟ ଲୁଚିଥିଲା । ସେଇ ଖାତାଗୁଡ଼ିକ ଭିତରେ ।

'ହଁ, ମୁଁ ଦେଖିବି ।' କହିଲି

ଅଧ୍ୟାପକ ଜୀବନରେ ଏହିପରି ହୁଏ ବାରମ୍ବାର । ବାହାଘର ପାଇଁ ଚିନି ଯୋଗାଇ ଦେଇଥିବା କିମ୍ବା ମାଷ୍ଟରକ୍ୟାଣ୍ଟିନ ଛକ ନିକଟରେ ଚା' ଜଳଖିଆ ଖୁଆଇଥିବା

ଛାତ୍ରମାନଙ୍କ ପରି କେତେକ ଥାଆନ୍ତି । କିନ୍ତୁ ଅଧିକାଂଶ ଛାତ୍ର ବିଶେଷତଃ ସେମାନଙ୍କ ଅଭିଭାବକମାନେ ଆସନ୍ତି ଅଲିଖିତ ବୁଝାମଣାଟିଏ କରାଇନେବା ପାଇଁ-'ତୁମେ ଆମ କଥା ବୁଝିଲେ ଆମେ ତୁମ କଥା କରିଦେବୁ ।'

ଯେ କୌଣସି ପରୀକ୍ଷା ପରେ ତେଣୁ ଦଳ ଦଳ ଛାତ୍ର ଓ ଅଭିଭାବକ ରୋଲ ନମ୍ବରମାନ ଧରି ଇତସ୍ତତଃ ହୁଅନ୍ତି ପରୀକ୍ଷକମାନଙ୍କ ନିକଟରେ । ସଚରାଚର ଉଦ୍ଧତ ବଡ଼ ବଡ଼ ଅଫିସରମାନେ ତଠାତ୍ ନମନୀୟ ଆଚରଣ ଦେଖାନ୍ତି-ଆନ୍ତରିକ ବ୍ୟବହାରରେ ଆପଣଙ୍କୁ ମୁଗ୍ଧ କରିବାର ଉଦ୍ୟମ କରନ୍ତି । କାମଟି ହାସଲ ହେବା ପରେ ପୁଣି ସେମାନେ ଫେରିଯାନ୍ତି ଔଦ୍ଧତ୍ୟର ପୁରୁଣା ଖୋଳ ଭିତରକୁ । କେହି କେହି ପ୍ରଚ୍ଛନ୍ନ ଭୟ ମଧ୍ୟ ଦେଖାନ୍ତି ।

ମଜାର କଥା, ବହୁ ଅଧ୍ୟାପକ ନିଜଆଡୁ ଆଗେଇ ଆସନ୍ତି ବଡ଼ ବଡ଼ ଅଫିସର କିମ୍ବା କ୍ଷମତାଶାଳୀମାନଙ୍କ ପିଲାମାନଙ୍କୁ ସାହାଯ୍ୟ କରିବାକୁ । କ୍ଷମତାଶାଳୀ ମାନେ ନିଜେ ସବୁବେଳେ ବାହାରକୁ ବାହରନ୍ତି ନାହିଁ । ସେମାନଙ୍କ ବିଶ୍ୱସ୍ତ କିରାଣି ଇତ୍ୟାଦିଙ୍କୁ କାର୍ଯ୍ୟରେ ମୁତୟନ କରନ୍ତି ।

ଥରେ ଆମ ବିଶ୍ୱବିଦ୍ୟାଳୟରେ କୌଣସି ବିଭାଗର ସେକ୍ରେଟେରୀ, ଡେପୁଟି ସେକ୍ରେଟେରୀ, ଅଣ୍ଡରସେକ୍ରେଟେରୀ-ଏତିନି ଜଣଙ୍କ ସନ୍ତାନମାନେ ଗୋଟାଏ ବର୍ଷ ପରୀକ୍ଷା ଦେଲେ । ପ୍ରତ୍ୟେକ ଚାପ ପକାଇଲେ ନିଜ ସନ୍ତାନଟିକୁ ପ୍ରଥମ କରିବା ପାଇଁ । ବିଷମ ସମସ୍ୟା । ବର୍ତ୍ତମାନ ବିଜ୍ଞ ପରୀକ୍ଷକମଣ୍ଡଳୀ ସ୍ଥିର କଲେ- ସେକ୍ରେଟେରୀଙ୍କ ସନ୍ତାନ ହେବ ପ୍ରଥମ, ଡେପୁଟି ସେକ୍ରେଟାରୀଙ୍କ ସନ୍ତାନ ଦ୍ୱିତୀୟ ଓ ଅଣ୍ଡର ସେକ୍ରେଟାରୀଙ୍କ ସନ୍ତାନ ତୃତୀୟ । ସେମାନେ ଏହାଠାରୁ ଅଧିକତର ଗ୍ରହଣଯୋଗ୍ୟ ସିଦ୍ଧାନ୍ତ କ'ଣ ବା ନେଇଥାନ୍ତେ ?

କ୍ଷମତାଶାଳୀ ମାନଙ୍କ ପ୍ରତି ଭୟ ଅଧ୍ୟାପକୀୟ ଜୀବନର ଏକ ଦୃଶ୍ୟମାନ ଅଂଶ । ଥରେ ବିଶ୍ୱବିଦ୍ୟାଳୟରେ ଏମ.ଏ ପରୀକ୍ଷା ଚାଲିଥାଏ । ମୁଁ ଥାଏ ବିଭାଗୀୟ ମୁଖ୍ୟ ଓ ପରୀକ୍ଷାର ତତ୍ତ୍ୱାବଧାରକ । ଖୁବ୍ ସକାଳୁ ମାଟିଆ ପୋଷାକ ପିନ୍ଧା ପିଅନଟିଏ ମୋତେ ସଲାମ ମାରି ମୋ ହାତକୁ ବଢ଼ାଇ ଦେଲା କୁଳପତିଙ୍କ ହାତଲେଖା ଦୀର୍ଘ ଚିଠିଟିଏ । ଚିଠିଟିରେ ଲେଖା ଥିଲା, ଆମ ବିଭାଗର ଜଣେ ଛାତ୍ରୀ ଅସୁସ୍ଥ ହୋଇ ପଡ଼ିଛି । ତେଣୁ ତା' ପାଇଁ ସିକ୍‌ରୁମ୍‌ଟିଏ ଯୋଗାଇଦେବା ଆବଶ୍ୟକ ।

ଏଥିରେ ଅସ୍ୱାଭାବିକତା କିଛି ନ ଥିଲା । କୌଣସି ପରୀକ୍ଷାର୍ଥୀ ଅସୁସ୍ଥ ହେଲେ ତା' ପାଇଁ ସ୍ୱତନ୍ତ୍ର ରୁମ୍‌ଟିଏ ଯୋଗାଇଦେବାର ବ୍ୟବସ୍ଥା ଅଛି ।

ଏହା ପରେ ଇସରପସର ହୋଇ ନିଜ କାର୍‌ରେ ଆମ ଘରେ ଆସି ପହଞ୍ଚିଲେ ଜଣେ ଅବସରପ୍ରାପ୍ତ ପ୍ରଫେସର । ସେଇ ଛାତ୍ରୀଟି ସମ୍ପର୍କରେ ସେ ମଧ୍ୟ କହିବାକୁ ଆସିଥିଲେ । ତେବେ ସେ ଆଉ ପାଦେ ଆଗେଇଗଲେ ।

'ଦେଖ, ସେ ବିଚାରି ଦୁଇମହଲା ଉପରକୁ ଉଠିପାରିବ ନାହିଁ ତଳ ମହଲାରେ ତା' ପାଇଁ ରୁମ୍‌ଟିଏ ଯୋଗାଡ଼ କରିବାକୁ ହେବ ।'

'ତଳ ମହଲାରେ ରୁମ୍‌ଟିଏ ଦେବା ସମ୍ଭବ ନ ହୋଇପାରେ ।' ମୁଁ କହିଲି । ସେ କିନ୍ତୁ ନିଜେ ଦାୟିତ୍ୱ ନେଇ ବର୍ତ୍ତମାନ ଧାଇଁଲେ ଦର୍ଶନ ବିଭାଗର ମୁଖ୍ୟଙ୍କ ନିକଟକୁ । (ଦର୍ଶନ ବିଭାଗ ତଳ ମହଲା ଓ ଇଂରାଜୀ ବିଭାଗ ଦ୍ୱିତୀୟ ମହଲାରେ ଅବସ୍ଥିତ ।)

କିଛି ସମୟ ପରେ ସ୍କୁଟରରେ ଆସି ପହଞ୍ଚିଲେ ଆଉ ଜଣେ ବୟସ୍କ ପ୍ରାପ୍ତ ଅଧ୍ୟାପକ । ସେଇ ଅସୁସ୍ଥ ଛାତ୍ରୀ ପାଇଁ ସିକ୍ ରୁମ୍‌ଟିଏ ଯୋଗାଇଦେବା ତାଙ୍କର ମଧ ଅନୁରୋଧ ।

ଶେଷରେ ଯେ ଆସି ପହଞ୍ଚିଲେ ତାଙ୍କୁ ମୁଁ ଚିହ୍ନି ନ ଥିଲି । ଅଣ ଓଡ଼ିଆ ଭଦ୍ରବ୍ୟକ୍ତି । ବର୍ତ୍ତମାନ ଜାଣିଲି-ସେ ହେଉଛନ୍ତି ଛାତ୍ରୀର ପିତା । କହିବା ଅନାବଶ୍ୟକ ସେ ମଧ୍ୟ ସେହି କଥା କହିବାକୁ ଆସିଥିଲେ ।

ମୁଁ ତାଙ୍କୁ କହିଲି, 'ଆପଣଙ୍କ ପାଇଁ ସକାଳୁ କୁଳପତିଙ୍କଠାରୁ ଆରମ୍ଭ କରି ବହୁ ଲୋକ କହିସାରିଲେଣି । ଆପଣ ନିଶ୍ଚୟ ଜଣେ ଭି.ଆଇ.ପି. । ଆପଣଙ୍କ ପରିଚୟ ?'

କୌଣସି ଇଂରାଜୀ ଦୈନିକର ସେ ସ୍ଥାନୀୟ ସାମ୍ବାଦିକ । ସେ କହିଲେ । ତେବେ ଘଟଣାଟି ଏଇଠାରେ ସରିଲା ନାହିଁ । ଯଥା ସମୟରେ ପରୀକ୍ଷା ଆରମ୍ଭ ହେଲା । ତଳ ମହଲାରେ ଛାତ୍ରୀଟି ପାଇଁ ରୁମ୍‌ଟିଏ ମଧ୍ୟ ସଂରକ୍ଷିତ ରଖିଥିଲେ ସେଇ ଅବସରପ୍ରାପ୍ତ ପ୍ରଫେସର । ପରୀକ୍ଷା ଆରମ୍ଭ ପରେ ଛାତ୍ରୀଟି ସିଡ଼ି ଚଢ଼ି ଦ୍ୱିତୀୟମହଲାର ମୋ ରୁମକୁ ଆସିଲା । 'ତୁମର କ'ଣ ହୋଇଛି ଯେ, ତୁମ ପାଇଁ ଏତେ ଲୋକ ଚିନ୍ତିତ ହୋଇ ପଡ଼ିଛନ୍ତି ?' ମୁଁ ପଚାରିଲି ?

ତା'ର ବିଶେଷ କିଛି ହୋଇନାହିଁ ବୋଲି ସେ କହିଲା ଓ ଅନ୍ୟ ଛାତ୍ର ଛାତ୍ରୀମାନଙ୍କ ଗହଣରେ ସ୍ୱାଭାବିକ ଭାବରେ ପରୀକ୍ଷା ଦେଲା ।

ଏଇ ଲେଖାଟି ପଢ଼ି ପାଠକମାନେ ନ ଭାବନ୍ତୁ, ମୁଁ ଜଣେ ଅତ୍ୟନ୍ତ ସାଧୁ ବ୍ୟକ୍ତି ଏବଂ ସକଳ ସନ୍ଦେହର ଊର୍ଦ୍ଧ୍ୱରେ । ଅଧ୍ୟାପକମାନଙ୍କଠାରୁ ଅନ୍ୟମାନେ ଯେପରି

ସାହାଯ୍ୟ ଆଶା କରନ୍ତି, ଅଧ୍ୟାପକମାନେ ଅନ୍ୟମାନଙ୍କଠାରୁ ସେହିପରି କିଛି ଆଶା କରନ୍ତି । ଏଇ ସାହାଯ୍ୟ ବଳୟରୁ ନିସ୍ତରିଯିବା ଏତେ ସହଜ ନୁହେଁ । ଅନ୍ୟମାନେ ଯାହା କରୁଛନ୍ତି, ସେଥିପାଇଁ ମୁଁ କେତେକ ପରିମାଣରେ ଦାୟୀ; ସେହିପରି ମୋ ପାଇଁ ଅନ୍ୟମାନେ ।

ଥରେ ଜଣେ ଛାତ୍ର ମୋ ନିକଟକୁ ଆସି ଟେବୁଲ ଉପରେ ରଖିଲେ ଖାମଟିଏ । ସେଥିମଧ୍ୟରୁ କେତୋଟି ଶହେଟଙ୍କିଆ ନୋଟ ଉଙ୍କି ମାରୁଥିଲେ ।

ତାଙ୍କର ପରୀକ୍ଷା ଖାତାଟି ମୋ ନିକଟରେ ଥିବାରୁ ସେ ମୋ ପାଇଁ ଆଣିଥିଲେ ଉପହାର । ମୁଁ ତାଙ୍କୁ ପଚାରିଲି, 'ତୁମେ ମୋତେ କେତେ ବର୍ଷ ଧରି ଜାଣିଛ । ମୁଁ ଟଙ୍କା ନେଇ ତୁମ ମାର୍କସ୍ ବଢ଼ାଇଦେବି ଏ ଧାରଣାଟି ତୁମ ମନରେ ହେଲା କାହିଁକି ?

ସେ କହିଲେ 'ସାର, ଆଉ ଦୁଇଜଣ ଅଧ୍ୟାପକଙ୍କ ନିକଟକୁ ଟଙ୍କା ନେଇଯାଇଥିଲି । ସେମାନେ ଟଙ୍କା ନେବାରୁ ସେଇ ସାହସରେ ଆପଣଙ୍କ ନିକଟକୁ ଆସିଲି । (ସେ ବିନା ଦ୍ୱିଧାରେ ଅଧ୍ୟାପକ ଦୁହିଁଙ୍କ ନାମ କହିଦେଲେ । ଜଣେ ଅବସର ନେଇସାରିଲେଣି । ଆଉ ଜଣେ ବର୍ତ୍ତମାନ ଅପେକ୍ଷାକୃତ ଦାୟିତ୍ୱସମ୍ପନ୍ନ ପଦବୀରେ ଅଛନ୍ତି ।)

ଦୁଇଜଣ ଅଧ୍ୟାପକ ଯଦି ମାର୍କସ୍ ବଢ଼ାଇବା ପାଇଁ ଟଙ୍କା ନେଲେ, ତୃତୀୟ ଜଣକ ନେଇ ନାହିଁ କହିଲେ କିଏ ବିଶ୍ୱାସ କରିବ ?

ସାହାଯ୍ୟ କଲେ ଯେପରି ପ୍ରତି ସାହାଯ୍ୟ ମିଳିବାର ସମ୍ଭାବନା ଥାଏ, ସାହାଯ୍ୟ ନ କଲେ ସେହିପରି ଦଣ୍ଡ ମିଳିବାର ଭୟ ମଧ୍ୟ ଥାଏ । ଥରେ ଜଣେ କୁଳପତି ତାଙ୍କର ଜଣେ ବନ୍ଧୁଙ୍କୁ ସାହାଯ୍ୟ କରିବା ପାଇଁ ପରୀକ୍ଷା ବ୍ୟାପାରରେ ହସ୍ତକ୍ଷେପ କଲେ । ମୁଁ ପରୀକ୍ଷା ଦାୟିତ୍ୱରେ ଥିଲି । ତାଙ୍କ ସହିତ ସହଯୋଗ କଲି ନାହିଁ । ତା'ପରେ ସେ ମୋତେ କିଛି ହଇରାଣ କରିବାକୁ ଉଦ୍ୟମ ଆରମ୍ଭ କରିଦେଲେ । ଅବଶେଷରେ କିନ୍ତୁ କ'ଣ ଭାବି ଅବସର ନେବା ପୂର୍ବରୁ ମୋତେ ଘରକୁ ଡାକି ମିଠା ଇତ୍ୟାଦି ଖୁଆଇଲେ ଓ ସେ ଯେ ମୋର ପରମ ଶୁଭେଚ୍ଛୁ, ଏହା ମୋତେ ବୁଝାଇବାକୁ ଚାହିଁଲେ ।



# ରଘୁଆ ଓ ଅନ୍ୟମାନେ

ମୋ ପିଲାଦିନୁ ଆଜିଯାଏଁ ଆମ ଘରେ ଅନେକ ଚାକର-ଚାକରାଣୀ ରହିଲେଣି ସମସ୍ତଙ୍କୁ ମନେପକାଇବା ସହଜ ନୁହେଁ । କିଏ ଦିନେ, କିଏ ସପ୍ତାହେ, ମାସେ ବା କିଏ ବର୍ଷ ବର୍ଷ ରହିଛନ୍ତି । କେତେଜଣଙ୍କର ନାଁ ମନେ ଅଛି, କିନ୍ତୁ ଅନେକଙ୍କ ନା ମନେ ନାହିଁ । ସେମାନେ ଏକାଘରେ ଆମର ଏତେ ନିକଟରେ ଏତେ ଦିନ ରହିଥିଲେ ମଧ୍ୟ ଆମେ ଯେ ତାଙ୍କର ଏତେ କମ୍ ଖବର ରଖୁଛୁ, ଭାବିଲେ ସତରେ ଆଶ୍ଚର୍ଯ୍ୟ ଲାଗେ । ଅଥଚ ସେମାନଙ୍କ ସୁଖ, ଦୁଃଖ, ସୁବିଧା, ଅସୁବିଧା ଆମଠାରୁ କୌଣସି ଗୁଣରେ ଅଲଗା ବୋଲି କୁହାଯାଇ ପାରିବ ନାହିଁ ।

ସେମାନଙ୍କ କଥା ଭାବିଲେ ପ୍ରଥମେ ମନକୁ ଆସେ ରଘୁଆ । ପିଲାଦିନେ ମୁଁ ରଘୁଆ ନାଁ ଶୁଣିଥିଲି । ମାଆ, ନନା, ଢେଢେନାନୀ ଓ ଦେଠେଇଠାରୁ । ମୋର କିନ୍ତୁ ତାକୁ ଦେଖିବାର ମନେ ନାହିଁ । ସେ ଆମ ଘରେ ଥିଲାବେଳେ ମୁଁ ଖୁବ୍ ଛୋଟ ହୋଇଥିଲି ।

ରଘୁଆ କୁଆଡ଼େ ଥିଲା ଆମ ଘରର ପୁଅ ପରି । ସବୁ କଥା ସେ ବୁଝୁଥିଲା । ସବୁ ହିସାବ ପତ୍ର ବି ରଖୁଥିଲା । ମା ଓ ନନା ଯାହା କହୁଥିଲେ, ତାହା ହେଉନଥିଲା; ରଘୁଆ ଯାହା କହୁଥିଲା, ସେୟା ହେଉଥିଲା । ଏମିତି ଜଣେ ଥିଲା ସେ । ଅଥଚ ତାର କ'ଣ ହେଲା କେଜାଣି, ଦିନେ ପାହାନ୍ତାରେ ସେ ଆମ ଘରୁ କ'ଣ ସବୁ ଜିନିଷପତ୍ର ଗଣ୍ଠିଲାରେ ବାନ୍ଧି କୁଆଡ଼େ ଚମ୍ପଟ ଦେଲା । ଆଉ ତା' ଆବିର୍ଭାବ ହେଲା ନାହିଁ ପୁରୀ ସହରରେ । କୁଆଡ଼େ ଗଲା ସେ କେଉଁ ଦୂର ମଫସଲ ଗାଁ- କେହି ଜାଣିଲେ ନାହିଁ ।

ମୋ ମାଆ କିନ୍ତୁ ତାକୁ ଅଭିଶାପ ଦେଉଥିଲା ବେଳେବେଳେ । କହୁଥିଲା, ''ରଘୁଆ, ବ୍ରହ୍ମସ୍ୱ ଖାଇଛି ସିନା, କିନ୍ତୁ ହଜମ କରି ପାରିଲେ ତ !''

ଦିନେ ଛାଇ ଲେଉଟାବେଳେ ଆମ ଦାଣ୍ଡ ଦୁଆରେ ଆସି ବସିଲା କେହିଜଣେ ମଇଳା ମଫସଲି ଲୋକ-ଢଳ ଢଳ ଆଖିରେ ଗୋଟିଏ ଦିଗକୁ ଚାହିଁ ରହିଥାଏ । ଦେଠେଇ ତାକୁ ଚିହ୍ନିଲା- ''କିରେ ରଘୁଆ, ତୁ ବଞ୍ଚିଛୁଟି ? ଏମିତି କ'ଣ ଚାହୁଁଚୁରେ ? ତତେ କିଛି ଦିଶୁନାହିଁ କି ?''

''ନା ମା, ମୁଁ ଅନ୍ଧ ହୋଇଯାଇଛି । ବାଟ ପଚାରି ପଚାରି ଆସିଛି । ମତେ ଆଉ କିଛି ଦୃଶ୍ୟ ହେଉ ନାହିଁ ।''

ମୋ ମାଆ ସେତେବେଳକୁ ମରିଯାଇଥିଲା । ମୁଁ ପଢୁଥିଲି କଲେଜରେ । କେତେ ବର୍ଷ ପରେ ରଘୁଆ ପୁଣି ଆସିଚି ଆମ ଘରକୁ-ବାର ଚଉଦ ବର୍ଷ ପରେ ହୁଏତ ।

ଦେଠେଇ ତାକୁ ବେଲାଏ ମୁଢ଼ି ଓ ଢାଳେ ପାଣି ପିଇବାକୁ ଦେଲା ଓ ବଡ଼ ପାଟିରେ କହିଲା, ''ଆରେ ବ୍ରହ୍ମସ୍ୱ ଖାଇଥିଲୁ ପରା, ପାରି କରିପାରିଲୁ ?''

ରଘୁଆ ସେମେଟା ମୁଢ଼ି ପାକୁଳେଇ ପାକୁଳେଇ ତା' ସାଙ୍ଗେ ଶବ୍ଦ ଗୁଡ଼ାଏ ବି ପାକୁଳାଉଥାଏ, ''ଯାହା କହୁଚ ସତ । ବ୍ରହ୍ମସ୍ୱ ଖାଇଥେଲି । ପାରି କରି ପାରିଲି ନାହିଁ । ଅନ୍ଧ ହେଇଯାଇଚି । ଯୋଡ଼େ ଯୋଡ଼ ମାଇକିନିଆ ବାହା ହେଇଥେଲି, କେହି ପଚାରିଲେ ନାଇଁ । ଏମିତି ବାର ଦୁଆର ଶୁଖିପିଣ୍ଡା ହେଇ ବୁଲୁଚି ।''

ରଘୁଆକୁ ଦେଖିବାକୁ ଆମ ଦୁଆରେ ବେଶ୍ ଗହଳି । ପୁରୁଣା ଲୋକେ ତାକୁ ଚିହ୍ନିଲେ, କେହି କେହି ତାକୁ ମନେ ପକେଇବି ଦେଲେ ସେ କେମିତି ଆମ ଘରୁ ଚୋରି କରି ଚମଟ ମାରିଥିଲା ଦିନେ । ରଘୁଆ ଆମ ଘରୁ ଚୋରି କରିବା କଥା ମୋ ମାଆ ତ ସବୁବେଳେ ଦୋହରାଉଥିଲା ସେ ନିଜେ ଆଖି ମୁଜିବାଯାଏଁ ।

ମୁଢ଼ିଖାଇ ଓ ପାଣି ପିଇ ବାଟ ଅଣ୍ଡାଳି ଅଣ୍ଡାଳି ରଘୁଆ ଯୁଆଡୁ ଆସିଥିଲା, ସେଆଡ଼େ ଚାଲିଗଲା । ଗଲାବେଳେ ମନକୁ ମନ ଘୋଷି ହେଉଥାଏ, ''ବୁଢ଼ୀ ସାଆନ୍ତାଣୀ ମତେ ପୁଅ ପରି ଦେଖୁଥିଲେ । କୁଆଡ଼େ ସବୁ ଗଲେଣି, ଆହା । ମୁଁ ତ ବ୍ରହ୍ମସ୍ୱ ଖାଇଥିଲି । ପାରି କରି ପାରିଲି ନାହିଁ । ଏଇ ଦେଖୁନ, ଅନ୍ଧ ହେଇ ବୁଲୁଚି । ଯୋଡ଼େ ଯୋଡ଼େ ମାଇକିନିଆ ବାହା ହେଇଥିଲି । କିଏ କାଇଁକି ପଚାରିବ ?

ମୋ ନନା ନିଜେ ଏତେ ଗରିବ ଥିଲେ ବି ଚାକରମାନ ରଖୁଥିଲେ କିପରି, ଏହା ଭାବିଲେ ମୋତେ ଆମୋଦିତ ଲାଗେ । ତେବେ ନନା ନିଜକୁ ଗରିବ ବୋଲି ଭାବୁ ନଥଲେ ହୁଏତ । ରହିବା ପାଇଁ ଚାଳଘର ଖଣ୍ଡିଏ ଥିଲା, ଉପାସରେ ରହିବାକୁ ହେଉ ନଥିଲା । ତା'ଛଡ଼ା ଆମ ଚାରି ପାଖରେ ସମସ୍ତଙ୍କ ଅବସ୍ଥାତ ଥିଲାପ୍ରାୟ ଆମ

ପରି । ତେଣୁ ନନା ନିଜକୁ ଗରିବ ଅସହାୟ ମନେ କରନ୍ତେ କାହିଁକି ?

ଦିନରେ ଥରେ ବି ଖାଇବାକୁ ପାଉ ନଥିବା ପିଲାଟିଏ ଯଦି ବୋଲହାକ କରିବାକୁ ଜୁଟି ଯାଉଥିଲା, ସେ ଚାକର ହୋଇ ଆମଘରେ କେତେଦିନ ରହିଯିବାରେ ଆଶ୍ଚର୍ଯ୍ୟକର କିଛି ନଥିଲା । ଗଣ୍ଡିଏ ଖାଇବା ଛଡ଼ା ଆଉ କିଛି ହୁଏତ ସେ ମାଗୁ ନଥିଲା । ପୁରୀ ସହରରେ ବଡ଼ଦାଣ୍ଡରେ ଏମିତି ଗରିବ ପିଲାମାନେ ଅହରହ ଇତସ୍ତତଃ ହେଉଥିଲେ ବୋଲି କହିଲେ ଭୁଲ ହେବ ନାହିଁ ।

ଆଉ ଜଣଙ୍କ କଥା ମନେ ପଡୁଛି । ତାଙ୍କର ନାଁ ମନେ ନାହିଁ । 'ଚାକର' ବୋଲି କହୁଛି, କାରଣ ସେ ମୋତେ କିଛି ଦିନ ପାଠ ପଢ଼ାଉଥିଲେ । ତାଙ୍କୁ ବୋଧହୁଏ ସତର ଅଠର ବର୍ଷ ହୋଇଥିଲା- ଧୋତି ହାଫ୍‌ସାର୍ଟ୍ ପିନ୍ଧୁଥିଲେ । କେମିତି କେଜାଣି କେତେଦିନ ରହିଗଲେ ଆମଘରେ । ମୋର ଖାଲି ଏତିକି ମନେ ଅଛି-ଆମ ଦାଣ୍ଡ ପିଣ୍ଡାରେ ସେ ବସନ୍ତି, ମୁଁ ପାଖରେ ଠିଆହୋଇଥାଏ, ସେ ମୋତେ ବୁଝାଉଥାନ୍ତି ଦ୍ୱିତୀୟ ଶ୍ରେଣୀ ପଢ଼ା ବହିରେ ଥିବା ଗୀତଟିଏ-

ଇସ୍କୁଲ ହେଲାଣି ଛୁଟି,
କାମତ ଗଲାଣି ତୁଟି ।
ବେଳତ ଗଲାଣି ଚାଲି,
ଥଣ୍ଡା ହେଲା ନଈ ବାଲି ।

ଏଇ ପଦଟି- ବିଶେଷତଃ ଶେଷ ଦୁଇଟି ଧାଡ଼ି-ମତେ ଖୁବ୍ ଭଲ ଲାଗେ ଏବେ ବି । ତେଣୁ ସେ ଧାଡ଼ି ଦୁଇଟିକୁ ମୁଁ ମନେ ମନେ ଦୋହରାଏ ଓ ସେତେବେଳେ ମୋ ଆଖି ଆଗରେ ଭାସି ଉଠନ୍ତି ଆମ ଘରେ ରହୁଥିବା ସେଇ ଚାକର-ଶିକ୍ଷକ । ସେ ଆମ ଘରେ କେତେ ଦିନ ରହିଥିଲେ ମୋର ମନେ ନାହିଁ । ବର୍ତ୍ତମାନ ସେ କେଉଁଠି କେଉଁ ଅବସ୍ଥାରେ ଅଛନ୍ତି, ମୁଁ ହେଲେ ଜାଣି ପାରନ୍ତି ।

ଅଧ୍ୟାପକ ଚାକିରୀ କରିବାପରେ ଗତ ତିରିଶି ବର୍ଷ ଧରି ଆମ ଘରେ ନିୟମିତ ଚାକର ପୂଜାରୀ ରହିଆସିଛନ୍ତି । ଅନେକ ସମୟରେ ଦୁଇଜଣ ଆମ ଘରେ କାମ କରନ୍ତି- ଜଣେ ଚାକରାଣୀ ଘର ସଫାକରିବା ଓ ବାସନ ମାଜିବା ପାଇଁ, ଜଣେ ଚାକର ବା ପୂଜାରୀ ଘରର ଅନ୍ୟାନ୍ୟ କାର୍ଯ୍ୟପାଇଁ । ମୋ ସ୍ତ୍ରୀ ମଧ୍ୟ ଅଧ୍ୟାପିକା ହୋଇଥିବାରୁ ଓ ଆମ ପରିବାରରେ ଅନ୍ୟ କେହି ମହିଳା ନଥିବାରୁ ଚାକର ପୂଜାରୀଙ୍କ ଉପରେ ଆମେ ନିର୍ଭର କରି ଆସୁଛୁ ଖୁବ୍ ବେଶୀ । ଆମ ଘରର ପରିସ୍ଥିତି ଓ ଖାଦ୍ୟପେୟର ଦାୟିତ୍ୱ

ମୋଟାମୋଟି ସେଇମାନେ ହିଁ ନେଇଛନ୍ତି । କୁହାଯାଇପାରେ, ସେମାନେ ଖୁବ୍ ପରିଷ୍କାର ପରିଚ୍ଛନ୍ନ ନୁହନ୍ତି, ରୋଷେଇବାସ ସେମାନଙ୍କୁ ଭଲ ଭାବରେ ଜଣା ନାହିଁ । କିନ୍ତୁ ସେମାନଙ୍କୁ ବାଦ୍ ଦେଲେ ଆମ ଜୀବନ କଳ୍ପନା କରାଯାଇ ନପାରେ ।

ଅଥଚ ସାଧାରଣତଃ ଆମେମାନେ ସେମାନଙ୍କ ଉପସ୍ଥିତି ସେମାନଙ୍କ ଭଲ ମନ୍ଦ ସମ୍ପର୍କରେ ପ୍ରାୟ ସଚେତନ ନୋହୁଁ । ପାଦରେ ଜୋତା ବଦଳାଇବାପରି ଗୋଟିଏ ଚାକର ବଦଳାଇ ଅନ୍ୟ ଚାକରଟିଏ ରଖିବାକୁ ଆମେ ରୁଟିନ୍‌ବନ୍ଧା ନିୟମ ବୋଲି ହୁଏତ ମନେ କରୁ ।

ମୋ ସ୍ତ୍ରୀ ଖୋର୍ଦ୍ଧା କଲେଜରେ ଓ ମୁଁ ପୁରୀ କଲେଜରେ ଅଧ୍ୟାପକ ଥିବା ସମୟରେ ୧୯୭୬ ରେ ଆମ ଘରେ ରହିବା ପାଇଁ କୁଆଡୁ ଆସି ପହଞ୍ଚିଲା ପିଲାଟିଏ-ନାମ ବାଳକୃଷ୍ଣ । ମେଢ଼ିଆ, ଟାଆଁସା ବାଳ, ଶେଥା ଚମଡ଼ା, ବୟସ ଦଶ କି ବାର । ଯେ ମୋତେ ତାକୁ ଆମ ଘରକୁ ଆଣି ଦେଇଥିଲେ, ସେ କହିଲେ ତା ବାପା ମା' ଯକ୍ଷ୍ମା ରୋଗରେ ମରିଯାଇଛନ୍ତି । ପିଲାଟି କୁଆଡ଼େ ରେଳ ଆଗରେ ଆତ୍ମହତ୍ୟା କରିବାକୁ ଯାଉଥିଲା । ବାପା-ମା ଯକ୍ଷ୍ମାରୋଗରେ ମରିଯାଇଛନ୍ତି ଶୁଣି ପିଲାଟିକୁ ରଖିବି କି ନାହିଁ, ମୁଁ ଟିକିଏ ଦ୍ୱନ୍ଦ୍ୱରେ ପଡ଼ିଲି । କିନ୍ତୁ ଜଣେ ଡାକ୍ତରଙ୍କ ସହିତ ପରାମର୍ଶ କରିବାପରେ ସ୍ଥିର କଲି-ପିଲାଟି ମୋ ପାଖରେ ରହୁ ।

ସମ୍ବଲପୁରରେ ପ୍ରାୟ ଦୁଇବର୍ଷ ବାଳକୃଷ୍ଣ ଆମ ଘରେ ଥିଲା । ସେ ଆମ ଘରେ ରୋଷେଇବାସ କରୁଥିଲା ଓ ମୋର ବର୍ଷକର ପୁଅକୁ ସମ୍ଭାଳୁ ଥିଲା । ତାକୁ ଛାଡ଼ି ଆମେ ଚଳିପାରୁ ନଥିଲୁ ।

ଆମଘରେ ରହିବାପରେ ବାଳକୃଷ୍ଣର ଚେହେରା ବଦଳିଗଲା । ସମ୍ବଲପୁରରେ ବୁଢ଼ାରଜା ଅଞ୍ଚଳରେ କାମ କରୁଥିବା ତା' ବୟସର ଘରୋଇ ଚାକରମାନଙ୍କ ସହିତ ଦୋସ୍ତି ଜମାଇବା ପରେ ତାର ଚାଲିଚଳଣରେ ମଧ୍ୟ ପରିବର୍ତ୍ତନ ଦେଖାଗଲା । ଦରମା ପଇସାରେ ସେ ଦାମିକା ଚଟି, କଳା ଚଷମା ଇତ୍ୟାଦି କିଣିଲା ଓ ଘର ଭିତରେ କାମ କରୁଥିବା ସମୟରେ ମଧ୍ୟ ସେଗୁଡ଼ିକ ପିନ୍ଧିବାକୁ ଲାଗିଲା । ତାର ଗୋଟିଏ ଫଟୋ କେଜାଣି କେମିତି ମୋ ପାଖରେ ରହିଯାଇଛି । ସେଥିରେ ସେ ଅନ୍ୟ ପିଲାମାନଙ୍କ ସହିତ କଳା ଚଷମା ପିନ୍ଧି ହିନ୍ଦୀ ସିନେମା ହୀରୋ ଠାଣିରେ ଠିଆ ହୋଇଛି । ମୋଟିଏ ହାତରେ ମୋର ବର୍ଷକର ପୁଅକୁ କାଖେଇଛି । କାହା ସହିତ ଫାଇଟିଙ୍ଗ୍ କରିବା ଭଙ୍ଗୀରେ ଅନ୍ୟ ହାତଟି ଉପରକୁ ଟେକିଛି ।

ଆମେ ଯେତେବେଳେ ସମ୍ବଲପୁରରୁ ଭୁବନେଶ୍ୱରକୁ ଆସିଲୁ, ବାଳକୃଷ୍ଣ ଆମ ସାଙ୍ଗେ ଆସିବାକୁ ରାଜି ହେଲା ନାହିଁ । ସମ୍ବଲପୁରରେ ତାର ଅନେକ ଜଣାଶୁଣା ହୋଇ ସାରିଥିଲେ ଓ ତାକୁ କାମ ମିଳିବାରେ କିଛି ଅସୁବିଧା ନଥିଲା । ସେ ସ୍ଥାନୀୟ ଲୋକଙ୍କ ପରି ସମ୍ବଲପୁରୀ କହିପାରୁଥିଲା । ଆମେ ତାକୁ ଭୁବନେଶ୍ୱର ଆସିବାକୁ ପ୍ରବର୍ତ୍ତାଇଲୁ । ସେ କିନ୍ତୁ ସମ୍ବଲପୁରରେ ହିଁ ରହିଗଲା ।

ଆମେ ସମ୍ବଲପୁର ଛାଡ଼ିଲା ବେଳକୁ କିନ୍ତୁ ସେ ଆମକୁ ଆଉ କିଛି ଟଙ୍କା ମାଗିଲା । ତାର ଯୁକ୍ତି ଥିଲା, ଆମେ ତାକୁ କମ୍ ଦରମା ଦେଉଥିଲୁ । ଆମେ ତାକୁ ମାସିକ ଆଉ ଅଧିକ ଦଶଟଙ୍କା ବା ସେହିପରି କିଛି ଦେବାର ଥିଲା । ତେଣୁ ଆମଠାରୁ ସେ ଆଉ ଷାଠିଏ ଟଙ୍କା ବା ସେହିପରି କିଛି ପାଇବା କଥା ।

ଅଧିକା ଟଙ୍କା ଦେବାକୁ ମୁଁ ନାହିଁ କଲି । ସେ ଆମ ସାଙ୍ଗେ ଆସିଲେ ମୁଁ ତା ଦରମା ବଢ଼ାଇ ଦେବାକୁ ପ୍ରତିଶ୍ରୁତି ଦେଲି । ସେ ସମ୍ବଲପୁର ବସଷ୍ଟାଣ୍ଡ ଯାଏଁ ଆସିଥିଲା ଓ ଆମେ ବସ ଚଢ଼ିଲା ବେଳେ ବସକୁ ଲାଗି ଠିଆ ହୋଇ କାନ୍ଦୁଥିଲା । ସେ ଆମ ସାଙ୍ଗେ ଆସିଲା ନାହିଁ କି ମୁଁ ତାକୁ ତା ମାଗିବା ଅନୁସାରେ ଟଙ୍କା ଦେଲି ନାହିଁ ।

ବାଳକୃଷ୍ଣ ସମ୍ପର୍କରେ ଆମ ପାଖରେ ଆଉ କିଛି ଖବର ନାହିଁ ।

ବୋଧହୁଏ ୧୯୭୩-୭୪ରେ ଆମ ଘରେ ଥିଲା ବେନୁଆ । ବୟସ ଚଉଦ କି ପନ୍ଦର , ଗେଡ଼ା, କଳା, ବୋଲା ଓ ପରିଶ୍ରମୀ । ଦିନରେ ତାକୁ ଦଶବାର ଘଣ୍ଟା କାମ କରିବାକୁ ପଡୁଥିଲା । ସକାଳୁ ଉଠି କାମ ଆରମ୍ଭ କରେ ତ ରୋଷେଇବାସ ସରିଲା ବେଳକୁ ଦୁଇଟା କି ତିନିଟା । ଆମ ଘରେ ସବୁବେଳେ ବନ୍ଧୁମାନଙ୍କ ଆଡ଼୍ଡ଼ା । ଦିନରେ ହାରାହାରି କୋଡ଼ିଏ କପ୍ ଚା କରିବାକୁ ପଡ଼େ ତାକୁ ।

ଆମେ ରହୁଥାଉ ବାଣୀବିହାରରେ ଦୁଇ ବଖୁରିଆ ଫ୍ଲାଟ୍‌ଟିରେ । ଆମର ପଡ଼ୋଶୀ ଥାଆନ୍ତି ରାଜନୀତିବିଜ୍ଞାନର ଜଣେ ରିସର୍ଚ୍ଚ ଆସିଷ୍ଟାଣ୍ଟ୍ । ତାଙ୍କ ସହିତ ମୋର ଖୁବ୍ ଭଲ ବନ୍ଧୁତା ଥାଏ ।

ରିସର୍ଚ୍ଚ ଆସିଷ୍ଟାଣ୍ଟ୍‌ଙ୍କର ମଧ୍ୟ ଚାକରଟିଏ ଥାଏ । ବେନୁଆ ବୟସର । ତା ନାଁ ମନେ ପଡୁ ନାହିଁ । ତେବେ ମୁଣ୍ଡରେ ଚୁଟିଟାଏ ରଖିଥିବାରୁ ତାକୁ କେହି କେହି ଡାକୁଥାନ୍ତି ଚୁଟିଆ । ବେନୁଆ ଓ ଚୁଟିଆଙ୍କ ମଧ୍ୟରେ ଖୁବ୍ ଭଲ ପଡୁଥାଏ । ସୁବିଧା ପାଇଲେ ଗପସପ, ହସ ଖୁସି ।

ଦିନେ କ'ଣ ହେଲା କେଜାଣି, ରିସର୍ଚ୍ଚ ଆସିଷ୍ଟାଣ୍ଟ୍‌ବାବୁ ଅତି କ୍ରୋଧରେ ଆମ

ଘର ଭିତରକୁ ପ୍ରବେଶ କରି ମୋତେ ଖୋଜିଲେ । ମୁଁ ଘରେ ନଥିଲି । ମୋ ସ୍ତ୍ରୀ ଥିଲେ ଏକାକୀ । ରିସର୍ଚ୍ଚ ଆସିଷ୍ଟାଣ୍ଟ୍‌ବାବୁ ବେନୁଆକୁ ଡାକି ତା' ଉପରେ ବିଧା ଚାପୁଡ଼ା କଷିଦେଇଗଲେ । ତା'ପରେ ପ୍ରସ୍ଥାନ କଲେ ସ୍ୱଫ୍ଲାଟକୁ ।

ମୁଁ ଘରକୁ ଫେରି ବନ୍ଧୁଙ୍କ ଏତାଦୃଶ ଆଚରଣ ସମ୍ପର୍କରେ ଶୁଣିଲି । ଚୁଟିଆ, ବେନୁଆ ସମ୍ପର୍କରେ ତା' ମାଲିକଙ୍କ ଆଗରେ କିଛି ଅଭିଯୋଗ କରିଥିଲା ନିଶ୍ଚୟ । ଚୁଟିଆ ଅଭିଯୋଗ ଶୁଣି ବେନୁଆଯେ ଅପରାଧୀ ଏହା ଶତକଡ଼ା ଶହେ ବିଶ୍ୱାସ କରିଥିଲେ ରିସର୍ଚ୍ଚ ଆସିଷ୍ଟାଣ୍ଟ ବାବୁ । ତେଣୁ ଆଇନକୁ ହାତକୁ ନେବାକୁ ସ୍ଥିର କରିଥିଲେ ସେ ।

ମୁଁ ବନ୍ଧୁଙ୍କୁ ଏ ବିଷୟରେ କିଛି ପଚାରିଲି ନାହିଁ । କିନ୍ତୁ ଏହାପରେ ବେଶ୍ କିଛି ଦିନ ଯାଏଁ ଆମ ଭିତରେ କଥା ବାର୍ତ୍ତା ବନ୍ଦ ହୋଇଗଲା । ଆମେ ପରସ୍ପରକୁ ନଜାଣି ଥିବା ପରି ବ୍ୟବହାର ଦେଖାଇଲୁ ।

ବେନୁଆ ଆମ ଘରେ ରହିଲା ପ୍ରାୟ ଦୁଇ ବର୍ଷ । ହଠାତ୍ କେଜାଣି କାହିଁକି ସେ ଆମ ଘର ଛାଡ଼ି ଦେବାକୁ ବାହାରିଲା । ଆମେତାକୁ କମ୍ ଦରମା ଦେଉଛୁ-ଏହାହିଁ ଥିଲା ତାର ଅଭିଯୋଗ । ଶୁଣିଲି, ଆମ ଘରଠାରୁ ଅଳ୍ପ ଦୂରରେ ପାଣି ଟାଙ୍କି ପାଖରେ ସେଲୁନ୍‌ଟିଏ ପକାଇଥିବା ଭଣ୍ଡାରୀ ଅରିକ୍ଷିତ ବେନୁଆ ପାଇଁ ଭଲ କାମଟିଏ ଯୋଗାଡ଼ କରିଦେଇଛି । ଦିନକୁ ମଜୁରୀ ଦଶଟଙ୍କା । କାମ ବି ବେଶ୍ ସହଜ । ଘର ତିଆରି କରୁଥିବା ମିସ୍ତ୍ରୀମାନଙ୍କୁ ସାହାଯ୍ୟ କରିବା । ବାଉଁଶ ବଞ୍ଚ ଉପରେ ଚଢ଼ି ମୁଣ୍ଡରେ ଗାଣ୍ଡୁଆରେ ବାଲି ସିମେଣ୍ଟ ପ୍ରଭୃତି ବୋହି ମିସ୍ତ୍ରୀ ପାଖରେ ପହଞ୍ଚାଇ ଦେବାତାର କାମ । ଏତିକି କଲେ ମାସକୁ ତିନିଶହ ଟଙ୍କା । ବାବୁ ଘରେ କାମ କଲେ ଷାଠିଏ ଟଙ୍କା ।

ବେନୁଆ ଯାହା କଲା, ଆଉ ଯେ କେହି ଚାକର ସେଇଆ କରିଥାନ୍ତେ । ଟଙ୍କା ପାଇଁ କାମ କରିବା କଥା । ଯେଉଁ କାମରେ ବେଶୀ ଟଙ୍କା ମିଳିଲା, ସେଇ କାମ ନ କରିବ କିଏ ?

ଆମ ଘର ଛାଡ଼ିବାର ପ୍ରାୟ ଆଠଦିନ ପରେ ଖବର ପାଇଲି- ମୁଣ୍ଡରେ ସିମେଣ୍ଟ ବୋହି ବାଉଁଶ ମଞ୍ଚ ଉପରେ ଚଢୁ ଚଢୁ ତଳକୁ ଖସି ପଡ଼ିଲା ବେନୁଆ । ଡାକ୍ତରଖାନା ନେବା ଦରକାର ପଡ଼ିଲା ନାହିଁ ।

ବେନୁଆର ବାପା, ବୁଢ଼ୀମା (ବାପାର ବୋଉ) ଓ ସାନ ଭାଇକୁ ମୁଁ ଦେଖିଥିଲି । ସେମାନେ ଥରେ ଦି'ଥର ଆମ ଘରକୁ ଆସିଥିଲେ । ବୁଢ଼ୀମା'ଟି ତା କାନିରେ ବାନ୍ଧି ଆମ ପାଇଁ ଆଣିଥିଲା କିଛି ଚିନାବାଦାମ-ତା ବାଡ଼ିରେ ହୋଇଥିଲା

ହୁଏତ । ବେନୁଆ ଉପରେ ସେମାନେ ଅନେକ ଭରସା ରଖିଥିଲେ ।

ବେନୁଆର ଏମିତି ହେବାପରେ ଅରକ୍ଷିତ କହି ବୁଲିବାର ଶୁଣାଗଲା ସେ ଆଦୌ ବେନୁଆକୁ କହି ନଥଲା ବାବୁ ଘର ଛାଡ଼ି ମୂଳ କାମ କରିବା ପାଇଁ । ତା'ମନକୁ ସେ ମୂଳ କାମ ପାଇଁ ଯାଇଥିଲା ।

ବେନୁଆ ସାଙ୍ଗେ ଝଗଡ଼ା କରି ତାକୁ ମାଡ଼ ମରାଇଥିବା ଚୁଟିଆ ଏଇ ଘଟଣାରେ ସ୍ତମ୍ଭୀଭୂତ ହୋଇ ରହିଲା ତିନି ଚାରିଦିନ । କିଛି କହିଲା ନାହିଁ କି କାହା ସଙ୍ଗେ କଥା ହେଲା ନାହିଁ । ଯା ଭିତରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ବାବୁଙ୍କ ସହିତ ମୋର ପୁରୁଣା ସମ୍ପର୍କ ଅନେକ ପରିମାଣରେ ଫେରିଆସିଥିଲା । ବେନୁଆର ଏପରି ହେବାଶୁଣି ଚୁଟିଆର ପ୍ରତିକ୍ରିୟା ସମ୍ପର୍କରେ ସେ ହିଁ ମୋତେ କହିଥିଲେ ।

ସଦାନନ୍ଦ ପରି ପିଲାଟିଏ କାମ କରିବାକୁ ପାଇବା ଆଦୌ ସହଜ ନୁହେଁ । ଖୁବ୍ ପରିଶ୍ରମୀ । ମୁଁ ସକାଳୁ ଉଠି ଥରେ ଡାକି ଦେଲେ ଉଠିପଡ଼େ । ପରିଷ୍କାର ପରିଚ୍ଛନ୍ନ, କୌଣସି କାମ ବତାଇବାକୁ ପଡ଼େ ନାହିଁ । ଆଗରୁ ଫରେଷ୍ଟପାର୍କ ଅଞ୍ଚଳରେ କେଉଁ ଅଫିସରଙ୍କ ଘରେ ଥିଲା, ଘର କାମ ସବୁ ଶିଖି ଯାଇଥିଲା ଭଲଭାବରେ । ଦିନସାରା ଘର କାମରେ ଲାଗିଥାଏ । ଏପରିକି ଦିନରେ ବିଶ୍ରାମ ନେବାକୁ କହିଲେ ଶୁଣେ ନାହିଁ, ବଗିଚା କାମରେ ଲାଗିଯାଏ ।

ମଝିରେ ମଝିରେ ଆସେ ସଦାନନ୍ଦର କକା- ଭୁବନେଶ୍ୱରରେ କୌଣସି ଅଫିସ୍‌ରେ ପିଅନ । ତାର କାନ ଦୁଇଟା କୌଣସି କାରଣରୁ ମୁଣ୍ଡ ତୁଳନାରେ ନିହାତି ଛୋଟ । ତାକୁ ଦେଖିଲେ ମନେ ହୁଏ, ଲୋକଟି ଭିତରେ କିଛି ଦୂରଭିସନ୍ଧି ଖେଳି ବୁଲୁଛି ସବୁବେଳେ, ବାହାରକୁ ବାହାରି ଆସିବାକୁ ବାଟ ଖୋଜୁଛି ।

ସଦାନନ୍ଦ କକା ଆସେ ପୁତୁରାଠାରୁ ଦରମା ଟଙ୍କା ନେବା ପାଇଁ । କକା କାହିଁକି ଦରମା ଟଙ୍କା ନେଇଯାଉଚି ପଚାରନ୍ତେ ସଦାନନ୍ଦ ଯେଉଁ କାରଣଟି ବଖାଣି ଥିଲା, ତାହା ମୋଟାମୋଟି ଏହିପରି -

ସଦାନନ୍ଦର ବାପା ଓ କକା ଦୁଇଭାଇ । ବାପା ଗାଁଆରେ ବିଲବାଡ଼ି ଚାଷ କରେ । କକା ଭୁବନେଶ୍ୱରରେ ପିଅନ । ବାପା ଥରେ ଭାଲୁ ହାବୁଡ଼ରେ ପଡ଼ି ଖଣ୍ଡିଆ ଖାବରା ହେଲା । ତାର ଔଷଧ ପାଇଁ ଟଙ୍କା ଯୋଗାଇ ଦେଲା କକା । ଟଙ୍କା ବଦଳରେ ସେ କରଗତ କଲା ବଡ଼ ଭାଇର ଚାଷ ଜମିସବୁ । ଏହାପରେ ବଡ଼ଭାଇ ସାନଭାଇର ଜମିରେ ମୂଲିଆ କାମ କରେ । ତଥାପି ଔଷଧ ବାବଦକୁ କିଛି ଟଙ୍କା ତାର ଦେବାର

ଅଛି । ସେଥିପାଇଁ ସଦାନନ୍ଦର ଦରମା ଟଙ୍କା ନିୟମିତ ଆଦାୟ କରିନିଏ ତାର କକା । ସଦାନନ୍ଦ ତା' କକାକୁ ଭଲ ପାଉ ନଥିଲା ବୋଲି ମନେ ହେଉଥିଲା । କକା ଚାହୁଁଥିଲା ସଦାନନ୍ଦ ଏଣିକି ତା' ଜମିରେ ବାପ ସାଙ୍ଗେ ଚାଷ କରୁ । ସହରରେ ଆଉ ଚାକର କାମ ନକରୁ । ସଦାନନ୍ଦର ବାପା ବି ଚାଷକାମକୁ ବେଶୀ ପାରୁନାହିଁ ।

ଶେଷରେ ସଦାନନ୍ଦ ତା କକା ସାଙ୍ଗେ ଗାଁଆକୁ ଫେରିଗଲା । ଭାଲୁଦ୍ୱାରା କେତେକାଂଶରେ ଅର୍କମଣ୍ୟ ହୋଇପଡ଼ିଥିବା ତାର ବାପା ସାଙ୍ଗେ ସେ ଆଜି ବି ହୁଏତ କକା ଜମିରେ କାମ କରୁଥିବ । ଦିନେ ଯାହା ତା' ବାପାର ନିଜର ଜମି ଥିଲା, ସେହି ଜମିରେ ମୂଲିଆ କାମ କଲାବେଳେ ସେ କ'ଣ ଭାବୁଥିବ କେଜାଣି ? ସହରରେ ଅନ୍ୟ ଘରେ ଚାକର ହୋଇ ରହିବା, ନିଜ ଜମିରେ ମୂଲିଆ କାମ-ଯା ଛଡ଼ା ଜୀବନ ବଞ୍ଚାଇବା ପାଇଁ ସଦାନନ୍ଦ ପାଇଁ ଆଉ କି ଉପାୟ ଥାଇପାରେ ?

ସନ୍ତୋଷ ଅଳ୍ପ ଦିନ ରହିଥିଲା ଆମ ଘରେ । କାମଦାମ ବିଶେଷ କରେ ନାହିଁ । ତେବେ ଘର ଓଳାଇବା, ବାସନ ମାଜିବା, ବଗିଚା କାମ ଧୀରେ ସ୍ଥିରେ କରେ ।

ସକାଳୁ ଉଠେ ଡେରିରେ । ଡାକିଲେ ବି ସହଜରେ ତା' ନିଦ ଭାଙ୍ଗେ ନାହିଁ । ଦିନେ ତାକୁ ପଚାରିଲି, ''ତୁ ଏମିତି ଡେରିରେ ଉଠୁ କାହିଁକି ?'' ସେ କହିଲା, ''ଥରେ ଗଛରୁ ପଡ଼ିଯାଇଥିଲି । ମୋ ମୁଣ୍ଡରେ ଆଘାତ ଲାଗି ଅଚେତା ହୋଇଗଲି । ଡାକ୍ତରଖାନାରେ ଭଲ ହେଲି । ସେଇଦିନୁ ଟିକେ ଡେରିରେ ଉଠେ ।''

ତା'ପରେ ସନ୍ତୋଷ ଡେରିରେ ଉଠିଲେ ମୁଁ ତାକୁ କିଛି କହେ ନାହିଁ । ତରତର ହୋଇ କାମ କରିପାରେ ନାହିଁ ବୋଲି ମଧ୍ୟ ତା ଉପରେ ବିରକ୍ତ ହୁଏ ନାହିଁ ।

ଦୁଇତିନି ମାସ ପରେ ହଠାତ୍ ଦିନେ ସକାଳେ କେହି ସନ୍ତୋଷକୁ ଡାକିବାକୁ ଆସିଲା ।

ଆଶ୍ଚର୍ଯ୍ୟ କଥା, କେହି ଜଣେ ଆସିବ ବୋଲି ସେ ଯେମିତି ଆଗରୁ ଜାଣିଥିଲା । ଶେଯରୁ ଉଠି ଶୀଘ୍ର ଶୀଘ୍ର ତା' ଲୁଗାପଟା ଦିଖଣ୍ଡି ସଜାଡ଼ି ନେଲା । ମୋ ପାଖକୁ ଆସି କହିଲା, ''ବାପ ଅବସ୍ଥା ଅତି ଖରାପ । ଗାଁଆରୁ ଜଣେ ଭାଇ ଆସିଛି ।''

ଆମ ଘରୁ ଏହିପରି ଯିବାର ଦୁଇତିନି ଦିନ ପରେ ସନ୍ତୋଷ ଆମ ଘରଠାରୁ ଅଳ୍ପ ଦୂରରେ ଠିଆହୋଇ ବିଡ଼ି ଟାଣୁଥିବାର ଦେଖିଲି । ମଜାର କଥା, ସେ ମୋତେ ଚିହ୍ନି ଥିବାର କୌଣସି ସୂଚନା ମଧ୍ୟ ଦେଖାଇଲା ନାହିଁ ।

ସନ୍ତୋଷ ସେଠାରୁ ଗଲାପରେ ପାନ ଦୋକାନୀକୁ ତା' ବିଷୟରେ ପଚାରିଲି । ପାନ ଦୋକାନୀ କହିଲା, ସନ୍ତୋଷ ଦୁଇ ତିନିଦିନ ହେଲା ସେଠାରେ ମୂଲିଆ କାମ କରୁଛି ।

ଏହା ଆଗରୁ ସେ କାହା କାହା ଘରେ ରହିଥିବା କଥା ମୁଁ ପାନ ଦୋକାନୀଠାରୁ ଶୁଣିଲି । ପାନ ଦୋକାନୀ ପଚାରିଲା, ''ସେ ଆପଣଙ୍କ ଘରୁ କିଛି ଚୋରି କରି ନାହିଁତ ? ଆଗରୁ କାହା ଘରେ ଥରେ ଦି'ଥର ଚୋରି କରି ସେ ଧରା ପଡ଼ିଥିଲା । ଏବେ ଅଳ୍ପଦିନ ତଳେ କୁଆଡୁ ଛତାଟିଏ ଆଣି କାହାକୁ ବିକୁଥିଲା । ଆପଣଙ୍କ ଛତା ନୁହେଁ ତ ?''

ଆମ ଘରେ କେତୋଟି ଛତା ଥିଲା ମୁଁ ନିଶ୍ଚିତ ନଥିଲି । ତେଣୁ ସନ୍ତୋଷ ଚୋରି କରିଥିବା ଛତାଟି ଆମର କି ନୁହେଁ, ଜାଣି ପାରିଲି ନାହିଁ କିମ୍ବା ସେ ସମ୍ପର୍କରେ ଆଉ ଅନୁସନ୍ଧାନ କରିବାର ଆବଶ୍ୟକତା ଅନୁଭବ କଲି ନାହିଁ ।

ସନ୍ତୋଷ ସହିତ ଏବେ ବି ମଝିରେ ମଝିରେ ମୋର ଦେଖାହୁଏ । ସେ ମୋତେ ଚିହ୍ନିଥିବାର କୌଣସି ଭାବଭଙ୍ଗୀ ଦେଖାଏ ନାହିଁ ।

ପ୍ରାୟ ବର୍ଷେ ତଳେ ଆମ ଘରେ କାମ କରିବା ପାଇଁ ଲୋକଟିଏ ଆସିଲା । ନାମ ତାର ଦଣ୍ଡପାଣି । ଲୋକଟି ମେଡ଼ିଆ, ମୁଣ୍ଡରେ ବାଳର ଗଣ୍ଠି, ଅଣ୍ଟା ହଲାଇ ନାଚିଲା ପରି ଚାଲେ । କଥା କହେ ଲହରେଇ ଲହରେଇ । ତାର ସମସ୍ତ ଜିନିଷ ପତ୍ରର ଗଣ୍ଠିଲାଟି ମୁଣ୍ଡାଇ ସେ ଆସି ପହଞ୍ଚିଲା ଆମଘରେ ।

ତାର ଚାଲି ଚଳଣ ଦେଖି ତାକୁ ଘରେ ରଖିବି କି ନାହିଁ, ହଠାତ୍ ସ୍ଥିର କରିପାରିଲି ନାହିଁ । ମୋ ପିଲାମାନେ ବି ହସି ହସି ତାକୁ କୁତୂହଳରେ ଚାହିଁଲେ ।

ଦଣ୍ଡପାଣି କହିଲା, ''ମୁଁ ତ ଆଗରୁ ସାମଲ ବାବୁଙ୍କ ଘରେ ଥିଲି । ଘର କାମ କରିବା, ବାସନ ମାଜିବା, ବଢ଼ିପାରିବା, ସବୁ ସୁନ୍ଦର କରିପାରେ । ତେମେ ମତେ ରଖିଲେ ସବୁ କାମ କରିଦେବି ।''

ମୁଁ ତା କଥାରେ ରାଜି ହେଲି । ସେ ଆମ ଘରେ ଚୁଡ଼ା ଇତ୍ୟାଦି ଖାଇଲା ଓ କିଛି ସମୟ ପରେ ଦେଖିଲି, ମୋ ପିଲାଙ୍କ ସହିତ ବେଶ୍ ଗପ ଜମାଇ ଦେଇଛି ।

ଦଣ୍ଡପାଣି ହୁଏତ ଆମ ଘରେ ରହିଥାନ୍ତା, କିନ୍ତୁ ସେଥିରେ ବାଧା ଦେଲା ଆମ କୁକୁର । ଆମ ଘରେଥିବା ଡୋବରମ୍ୟାନ୍ ବିକ୍‌କି ଦଣ୍ଡପାଣିକୁ ଦେଖି ଭୁକିଲା । ନୂଆ ଲୋକଟିଏ ଦେଖିଲେ ବକ୍‌କି ଭୁକେ । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଥରେ ଲୋକଟି ଘରେ ରହିଗଲେ ବିକ୍‌କି ତାର ବନ୍ଧୁ ହୋଇଯାଏ । ବିକ୍‌କି ଭୁକିବାର ଦେଖି ଦଣ୍ଡପାଣି ଡରରେ ଛାନିଆଁ । ସନ୍ତର୍ପଣରେ ମଝିରେ ମଝିରେ ଚାହୁଁଥାଏ ବିକ୍‌କି

ଆଡ଼କୁ ଓ କହୁଥାଏ, ''ମା ଲୋ ମା, ମତେ ଚୋବେଇ ଦେବ ।''

ମୁଁ ତାକୁ ବୁଝାଇଲି, ''ମୋଟେ ଡରନା । ଥରେ ରହିଗଲେ ଆଉ ସେ ଭୁକିବ ନାହିଁ । ସେତ ମୋଟେ କାମୁଡ଼ା କୁକୁର ନୁହେଁ ।''

ଦଣ୍ଡପାଣି ମୋ କଥା ଶୁଣିଲା ନାହିଁ । ନିଜ ଜିନିଷପତ୍ରର ଗଣ୍ଠିଲିଟି ମୁଣ୍ଡରେ ଥୋଇ ଅଣ୍ଟା ହଲାଇ ହଲାଇ ଚାଲିଗଲା ନୂଆ ଘରଟିଏର ସନ୍ଧାନରେ । ନୂଆଘରେ କୁକୁରଟିଏ ନଥାଉ ଏଇୟା ହୁଏତ ମନେ ମନେ ଭାବୁଥିଲା ସେ ।

ଚାକରମାନେ ଏହିପରି ଆସନ୍ତି ଓ ଯାଆନ୍ତି । ଆସିବା ଆଗରୁ ଆମେ ସେମାନଙ୍କୁ ଜାଣି ନଥାଉ, ଯିବା ପରେ ସେମାନଙ୍କୁ ଭୁଲି ଯାଉ । ଅଥଚ ଆମ ଜୀବନରେ ବନ୍ଧୁ-ସହକର୍ମୀ-ସମ୍ପର୍କୀୟମାନଙ୍କଠାରୁ ସେମାନଙ୍କ ଅବଦାନ ଅନେକ ସମୟରେ ଅଧିକ ।



# ଅନୁଭୂତିରେ ଭୁବନେଶ୍ୱର (୧୯୬୯-୨୦୦୦)

୧୯୬୯ରୁ ଆଜିଯାଏଁ ମୁଁ ମୋଟାମୋଟି ରହି ଆସିଛି ଭୁବନେଶ୍ୱରରେ । ସେଥିରୁ ପାଞ୍ଚ ବର୍ଷ ଥିଲି ଭାରତ ବାହାରେ । ସେତକ ବାଦ ଦେଲେ ଭୁବନେଶ୍ୱରରେ ମୋର ରହିବା ସମୟ ପଚିଶି ବର୍ଷରୁ ଅଧିକ ।

ଏହି ପଚିଶି ବର୍ଷ ମଧ୍ୟରେ ଭୁବନେଶ୍ୱରର ଅନେକ ବଦଳିଛି ସହରର ଆକାର ଅଧିକ ବିସ୍ତୃତ ହୋଇଛି । ନିର୍ମିତ ହୋଇଛି ଅନେକ କୋଠାବାଡ଼ି, ଅନେକ ଅନୁଷ୍ଠାନ । ଲୋକସଂଖ୍ୟା ବଢ଼ିଛି ଯଥେଷ୍ଟ; ଜଳବାୟୁ ବି ବଦଳିଛି । ଭୁବନେଶ୍ୱର ସହିତ ପରିଚିତ ସମସ୍ତେ ଏହା ଅନୁଭବ କରିଛନ୍ତି ।

ମୁଁ ସାରା ଭୁବନେଶ୍ୱର କଥା କହୁନାହିଁ, କହୁଛି କେବଳ ଉତ୍କଳ ବିଶ୍ୱ ବିଦ୍ୟାଳୟ କଥା- କିମ୍ବା ଉତ୍କଳ ବିଶ୍ୱବିଦ୍ୟାଳୟର ଇଂରାଜୀ ବିଭାଗ କଥା । କାରଣ ଭୁବନେଶ୍ୱରରେ ମୋର ଅନୁଭୂତିର କେନ୍ଦ୍ର ଉତ୍କଳ ବିଶ୍ୱବିଦ୍ୟାଳୟ କିମ୍ବା ଇଂରାଜୀ ବିଭାଗ । ଇଂରାଜୀ ବିଭାଗରେ ଅଧ୍ୟାପକ ଭାବରେ ଭୁବନେଶ୍ୱରରେ ମୋର ଅବସ୍ଥାନ । ବିଶ୍ୱବିଦ୍ୟାଳୟରେ କିମ୍ବା ଇଂରାଜୀ ବିଭାଗରେ ଯେଉଁ ପରିବର୍ତ୍ତନ ଘଟିଛି ପଚିଶି ବର୍ଷ ଭିତରେ, ମୋର ବିଶ୍ୱାସ, ସେ ପରିବର୍ତ୍ତନ ଘଟିଛି ଭୁବନେଶ୍ୱରର ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ।

୧୯୬୯ ମସିହାରେ ଏମ୍.ଏ. ଇଂରାଜୀ ବିଭାଗଟି ଖୋଲିଲା ଉତ୍କଳ ବିଶ୍ୱବିଦ୍ୟାଳୟରେ । ଛାତ୍ରଛାତ୍ରୀ ସଂଖ୍ୟା ଥିଲା ଦଶ । ଛାତ୍ର ସାତ, ଛାତ୍ରୀ ତିନି । ସେଇ ମଧ୍ୟରୁ ଇଂରାଜୀ ମାଧ୍ୟମ ସ୍କୁଲରୁ ଆସିଥିଲେ ଜଣେ ମାତ୍ର ଛାତ୍ରୀ । ପଚିଶି ବର୍ଷପରେ ଏଇ ଅନୁପାତ ଠିକ୍ ଓଲଟି ଯାଇଛି । ଛାତ୍ରଙ୍କ ଅପେକ୍ଷା ଛାତ୍ରୀଙ୍କ ସଂଖ୍ୟା ଅଧିକ ହୋଇଛି; ଓଡ଼ିଆ-ମାଧ୍ୟମ ସ୍କୁଲରୁ ଆସିଥିବା ଛାତ୍ର-ଛାତ୍ରୀ ସଂଖ୍ୟା ଯଥେଷ୍ଟ ହ୍ରାସ ପାଇଛି ।

ଏଇ ପରିବର୍ତ୍ତନ କେବଳ ଇଂରାଜୀ ବିଭାଗରେ ନୁହେଁ, ସମଗ୍ର ବିଶ୍ୱବିଦ୍ୟାଳୟରେ ଘଟିଛି ବୋଲି ମନେ ହୁଏ । ଏଥିରେ ଆନନ୍ଦିତ ହେବା ସ୍ୱାଭାବିକ- ଯେ ଆମର ଛାତ୍ରୀମାନେ ଉଚ୍ଚ ଶିକ୍ଷାରେ ଏତେ ସଂଖ୍ୟାରେ ଆଗେଇ ଆସିଛନ୍ତି । ପୁଣି ଚିନ୍ତିତ ହେବାର କଥା- ଓଡ଼ିଆ ମାଧ୍ୟମ ସ୍କୁଲଗୁଡ଼ିକର ଗୁରୁତ୍ୱ ଦିନକୁ ଦିନ ହ୍ରାସ ପାଉଛି ।

ବିଶ୍ୱବିଦ୍ୟାଳୟରେ-ଗତ ପଚିଶି ବର୍ଷ ମଧ୍ୟରେ-ନୂଆ ନୂଆ କୋଠାବାଡ଼ି ନିର୍ମିତ ହୋଇଛି; ନୂଆ ବହି, କମ୍ପ୍ୟୁଟର ଭଳି ଅତ୍ୟାଧୁନିକ ପାଠ୍ୟ-ଉପକରଣ ଆମଦାନୀ ହୋଇଛି । ଅନ୍ୟ ପ୍ରଦେଶରୁ, ତଥା ବିଦେଶରୁ ବହୁ ବିଶେଷଜ୍ଞ ବଶ୍ୱିବିଦ୍ୟାଳୟକୁ ଆସିଛନ୍ତି । ପରିଣାମରେ ଛାତ୍ରଛାତ୍ରୀମାନଙ୍କ ଚେତନା ଓ ଜ୍ଞାନର ଦିଗବଳୟ ବିସ୍ତାରିତ ହୋଇଛି । କିନ୍ତୁ କେଜାଣି କାହିଁକି କୋଠାବାଡ଼ି, ନୂଆ ପାଠ୍ୟ- ଉପକରଣ ବୃଦ୍ଧି ସହିତ ତାଳଦେଇ ବିଶ୍ୱବିଦ୍ୟାଳୟରେ ମଇଳା, ଆବର୍ଜନା, ଦୁର୍ନୀତି ମଧ୍ୟ ବଢ଼ିଛି - ବଢ଼ିଛି ଛାତ୍ରଛାତ୍ରୀ ମାନଙ୍କ ହତାଶା- ବୋଧ ଓ ଉଚ୍ଚ ଶିକ୍ଷା ପ୍ରତି ଅନାସ୍ଥା ଭାବ । କୋଡ଼ିଏ ବା ପଚିଶି ବର୍ଷ ତଳେ ଛାତ୍ର ଛାତ୍ରୀ ମାନେ ଅଧ୍ୟାପକମାନଙ୍କ ସହିତ ଯେପରି ସମ୍ପର୍କ ରଖୁଥିଲେ, ସମ୍ପ୍ରତି ସେପରି ରଖୁନାହାନ୍ତି । ଏକଦା ସାମାନ୍ୟ ଅସୁବିଧା ହେଲେ ଛାତ୍ରମାନେ ଆମ ଘରେ ଉପସ୍ଥିତ ହେଉଥିଲେ; ବର୍ତ୍ତମାନ ଶ୍ରେଣୀଗୃହ ବାହାରେ ଆମର ପ୍ରାୟ ସମ୍ପର୍କ ନାହିଁ । ଅନ୍ୟାନ୍ୟ ଅଧ୍ୟାପକମାନଙ୍କ ଏହିଭଳି ଅନୁଭୂତି ଥିବା ମୁଁ ଜାଣେ ।

ମୁଁ ଇଂରାଜୀ ଅଧ୍ୟାପକ, ଓଡ଼ିଆ ଭାଷାର ଜଣେ ଲେଖକ । ଇଂରାଜୀ ବିଭାଗରେ ଅନେକ ଛାତ୍ରଛାତ୍ରୀ ଆଗେ ଓଡ଼ିଆରେ ଲେଖାଲେଖି କରୁଥିଲେ । ସେମାନଙ୍କ ସହିତ ମୋର ଏକ ସ୍ୱତନ୍ତ୍ର ସମ୍ପର୍କ ଥିଲା । ସେମାନଙ୍କ ମଧ୍ୟରୁ କେତେ ଜଣ ଆଜି ଓଡ଼ିଆ ସାହିତ୍ୟର ସୁପରିଚିତ- ଯେପରି, ଯଶୋଧାରା ମିଶ୍ର, ବିଭୁତି ମିଶ୍ର, ଦୀପକ ପାଲ, ବସନ୍ତ ତ୍ରିପାଠୀ ଇତ୍ୟାଦି । ବର୍ତ୍ତମାନ ପରିସ୍ଥିତି ବଦଳି ଯାଇଛି । ଛାତ୍ରଛାତ୍ରୀ ମାନଙ୍କ ମଧ୍ୟରୁ ଅଧିକାଂଶ ଭଲ ଓଡ଼ିଆ ଉଚ୍ଚାରଣ ଜାଣନ୍ତି ନାହିଁ । ଓଡ଼ିଆ ଭାଷା-ସମ୍ପର୍କରେ ସେମାନଙ୍କର ବିଶେଷ ଆଗ୍ରହ ନାହିଁ । ଯେଉଁମାନେ ଇଂରାଜୀ ପଢ଼ିବେ, ସେମାନେ ସେମାନଙ୍କ ଅଧ୍ୟୟନ ଦ୍ୱାରା ଓଡ଼ିଆ ଭାଷା-ସାହିତ୍ୟକୁ ସମୃଦ୍ଧ କରିବେ । ଏପରି କଳ୍ପନାଟିଏ ଆଜି ଅବାନ୍ତର ମନେ ହେଉଛି । ଭଲ ଓଡ଼ିଆ କହୁଥିବା, ଲେଖୁଥିବା ଛାତ୍ରଛାତ୍ରୀ ବିଶ୍ୱବିଦ୍ୟାଳୟରେ ମିଳୁ ନାହାନ୍ତି-ଆଉ କେଉଁଠାରେ ମିଳିବେ ବୋଲି ଆମେ ଆଶା କରିବା !

ଆମ ଅଧ୍ୟାପକମାନଙ୍କ ମଧ୍ୟରେ ଅନେକ ପରିବର୍ତ୍ତନ ଘଟିଛି ଏଇ ପଚିଶି ବର୍ଷ ମଧ୍ୟରେ । ଅଧ୍ୟାପକମାନଙ୍କ ସଂଖ୍ୟା ତ ବଢ଼ିଛି- ବଢ଼ିଛି ମଧ୍ୟ ସେମାନଙ୍କ ଶିକ୍ଷାଗତ ଯୋଗ୍ୟତା, ବିଦେଶ ଭାଷଣ, ଆର୍ଥିକ ପ୍ରତିପତ୍ତି । ତା ସଙ୍ଗେ ସଙ୍ଗେ ବଢ଼ିଛି ନିଜ ବୃତ୍ତି ପ୍ରତି ଅନାଦର ଓ ହେୟଭାବ ।

ଏପରି କାହିଁକି ହେଉଛି ?



# ଦୂର ବନ୍ଧୁ

ସ୍କଟଲାଣ୍ଡର ଷ୍ଟର୍ଲିଂ ରେଲୱେ ଷ୍ଟେସନରେ ଓହ୍ଲାଇ ଦେଖିଲି, ପ୍ଲାଟଫର୍ମରେ ମୁଁ ହିଁ ଏକ ମାତ୍ର ଯାତ୍ରୀ । ସମୟ ରାତି ଚାରି । ଚାରିଆଡ଼େ ପ୍ରଚଣ୍ଡ ଥଣ୍ଡା, କୁହୁଡ଼ି ଓ ଅନ୍ଧାର ।

କ୍ୟାଣ୍ଟରବରୀରୁ ଛଅଘଣ୍ଟା ରେଳଯାତ୍ରା କରି ଆସିଥାଏ ଷ୍ଟର୍ଲିଂ । ଇଂଲଣ୍ଡ ସେତେବେଳେ ମୋ ପାଇଁ ନୂଆ ।

ଅସମୟରେ ଅପରିଚିତ ସ୍ଥାନରେ ପହଞ୍ଚିବାର ଅସୁବିଧା ମୋତେ ଚିନ୍ତିତ କଲା ।

ପ୍ଲାଟଫର୍ମରେ ଦୂରରୁ କେହି ଜଣେ ଆସୁଥିବା ଦେଖି ତାଙ୍କ ପାଖକୁ ଗଲି । ଦେହରେ କଳା ଓଭରକୋଟ, ମୁଣ୍ଡରେ ଟୋପି, ମୁହଁରେ ଦାଢ଼ି, ରୁକ୍ଷ ଚେହେରା । ଭୟ ଲାଗିଲା । ତଥାପି ସାହସ ସଞ୍ଚୟ କରି କହିଲି, ''ମୁଁ ଷ୍ଟର୍ଲିଂ ୟୁନିଭରର୍ସିଟି ଯିବି । କେମିତି ଯିବାକୁ ହେବ ?''

ସେ ମୋତେ ସନ୍ଦେହରେ ଚାହିଁଲେ । ଯାହା କହିଲେ ମୁଁ କିଛି ବୁଝି ପାରିଲି ନାହିଁ । ସେ ହୁଏତ ସ୍କଟଲାଣ୍ଡ ଭାଷା ବା ଗେଲିକ କହୁଥିଲେ । ତଥାପି ତାଙ୍କୁ ଧନ୍ୟବାଦ ଦେଇ ପ୍ଲାଟଫର୍ମ ବାହାରକୁ ଆସିଲି । ଏକୁଟିଆ ରାସ୍ତା । ଭୟ ଓ ଆଶଙ୍କା ।

କିଛି ଦୂରରେ ଛୋଟ ଚା ଦୋକାନଟିଏରେ ଆଲୁଅଟିଏ ଜଳୁଥିବା ଲକ୍ଷ୍ୟ କଲି । ଦୋକାନଟି ଅବଶ୍ୟ ବନ୍ଦ ଥିଲା । ସେଠାକୁ ଗଲି ଓ କବାଟ ଠକ୍ ଠକ୍ କଲି । ଦୋକାନ ଖୋଲିଲେ ଜଣେ ବୁଢ଼ୀ । ତାଙ୍କୁ କହିଲି ଯେ ମୁଁ ଜଣେ ଭାରତୀୟ, ଷ୍ଟର୍ଲିଂ ୟୁନିଭରର୍ସିଟି ଯିବାକୁ ଚାହେଁ, ଇତ୍ୟାଦି ।

ସେ ମୋତେ ଭିତରକୁ ଡାକିଲେ ଓ ଗୋଟିଏ ଷ୍ଟୁଲରେ ବସାଇଲେ ।

କହିଲେ, ବର୍ତ୍ତମାନ ତ ଯିବାର କିଛି ଉପାୟ ନାହିଁ । ସକାଳ ସାତଟାରେ ମଣ୍ଡି ବସ୍ ଧରିବାକୁ ହେବ । ବସ୍‌ଷ୍ଟପ୍ ଖୁବ ଦୂର ନୁହେଁ । ତେବେ ବସ୍ ଆସିବାକୁ ଡେରି ଅଛି । ମୁଁ ତାଙ୍କ ଦୋକାନରେ ଅପେକ୍ଷା କରିପାରେ ।

ସମ୍ପୂର୍ଣ୍ଣ ଅପରିଚିତ ସ୍ଥାନ ଓ ପରିବେଶରେ ଅପେକ୍ଷା କଲି ବେଶ୍ କିଛି ସମୟ । କିଛି ଗୋଟାଏ ପଢ଼ିବାକୁ ଚେଷ୍ଟାକଲି । ଯେତେଦୂର ମନେ ପଡୁଛି, ବୁଢ଼ୀ ମୋ ସହିତ ବିଶେଷ କଥାବାର୍ତ୍ତା ହୋଇ ନଥିଲେ । ସେ ଦୋକାନର ଜିନିଷସବୁ ସଜାଇ ରଖୁଥିଲେ- ହୁଏତ ଆସନ୍ତାକାଲିର କିଣାବିକା ପାଇଁ ପ୍ରସ୍ତୁତ କରୁଥିଲେ ନିଜକୁ । ତାଙ୍କ ପାଖରେ ଚୁପ୍‌ଚାପ୍ ବସିଥିଲା ଗୋଟାଏ ପ୍ରକାଣ୍ଡ ଭୁଆ ବିଲେଇ । ସେ ତା' ମାଲିକାଣୀଙ୍କ ମୁଡ୍ ଠିକ୍ ବୁଝିଥିଲା ନିଶ୍ଚୟ । ସେ ସବୁ ସମୟରେ ମୂର୍ତ୍ତିପରି ଚୁପ୍‌ଚାପ୍ ହିଁ ବସିଥିଲା । ବାହାର ଆଲୋକିତ ଦେଖାଯିବା ପରେ ମୁଁ ବୁଢ଼ୀଙ୍କୁ ଧନ୍ୟବାଦ ଜଣାଇ ରାସ୍ତା ଉପରକୁ ଆସିଲି । ମଣ୍ଡି ବସରେ ଷ୍ଟର୍ଲିଂ ୟୁନିଭାର୍ସିଟି ଯିବାରେ ମୋର କୌଣସି ଅସୁବିଧା ହୋଇ ନଥିଲା ।

ଇଂଲଣ୍ଡର କୋଭେଣ୍ଟ୍ରି ଶିଳ୍ପ ନଗର ଅଞ୍ଚଳରେ ଛୋଟ ଗାଉଁଲି ସହରଟିଏ ଲାମିଂଟନ ସ୍ପା । ସେଇ ସହରରେ ପାଦରେ ଚାଲି ଚାଲି କଟାଇଲି ଗୋଟିଏ ଦିନ । ସହରର ଟାଉନହଲ୍, ମିଉଜିୟମ୍, ସି.ଟି. ସେଣ୍ଟର ଇତ୍ୟାଦି ବୁଲି ବୁଲି ଦେଖିଲି ।

ଏମିତି ଛୋଟ ନିହାତି ଅଣଓସାରିଆ ଗଳିରେ ବୁଲୁ ବୁଲୁ ଦେଖିଲି ରେସ୍ତୋରାଁଟିଏ । କପେ ଚା ପାଇଁ ରେସ୍ତୋରାଁରେ ପଶିଲି ।

ନିହାତି ପରିଷ୍କାର ରେସ୍ତୋରାଁଟି । କାନ୍ଥର ରଂଗ ଧଳା; ଲାଲ ରଙ୍ଗର ପ୍ଲାଷ୍ଟିକ ଚେୟାର ଓ ଟେବୁଲ । ଦୋକାନୀ ଓ ତିନି ଚାରିଜଣ ଗ୍ରାହକ । ଚା କପଟି ଆଣି ଗୋଟିଏ ଚେୟାରରେ ବସିଲି । ଲକ୍ଷ୍ୟ କଲି, ମୋ ସାମ୍ନାରେ ବସିଥିବା ଭଦ୍ର ମହିଳା ମୋତେ ଚାହିଁ ଅଳ୍ପ ଅଳ୍ପ ହସୁଛନ୍ତି ।

''ଗୁଡ୍‌ମର୍ଣ୍ଣିଂ,'' ମୁଁ କହିଲି ''ଆପଣ ବେଶ୍ ଖୁସି ଅଛନ୍ତି ମନେହେଉଛି ।''

''ହଁ, ଆପଣଙ୍କ ବ୍ୟାଗଟି ସତରେ ଚମତ୍କାର'', ସେ ମୋତେ ବଧେଇ ଜଣାଇଲେ ।

ମୋ କାନ୍ଧରେ ପଡ଼ିଥିଲା ଗୋଟିଏ ପିପିଲି ଝୁଲା ବ୍ୟାଗ୍ । ଉଜ୍ଜ୍ୱଳ ଲାଲରଙ୍ଗର ବ୍ୟାଗ ଉପରେ ହରିଣ ଓ ମୟୂରର କଳା ରଂଗର ଛବି ।

''ଆପଣ କ'ଣ ସତରେ ଏ ବ୍ୟାଗଟି ପସନ୍ଦ କରନ୍ତି ?'' ପଚାରିଲି ଓ ସେ ବ୍ୟାଗଟି କେଉଁଠାରେ ପ୍ରସ୍ତୁତ ହୋଇଛି, ମୁଁ ଭାରତର କେଉଁ ଅଞ୍ଚଳରୁ ଆସିଛି ଇତ୍ୟାଦି କ୍ଷୁଦ୍ର ଭାଷଣଟିଏ ଦେଲି । ସେ ଭାରତ ସମ୍ପର୍କରେ ପ୍ରାୟ କିଛି ଜାଣି ନଥିବା ଭଳି ମନେ ହେଲା । ଭଦ୍ରମହିଳା ଥିଲେ ନିହାତି ନମ୍ର ଓ ମେଳାପି । ଆଉ ଥରେ ପଚାରିଲି, ''ଆପଣଙ୍କର କଣ ସତରେ ବ୍ୟାଗଟି ପସନ୍ଦ ହୋଇଛି ।''

''ନିଶ୍ଚୟ'', ସେ କହିଲେ ।

''ତା' ହେଲେ ଆପଣ ଦୟାକରି ଏ ବ୍ୟାଗଟି ମୋର ଉପହାର ରୂପେ ଗ୍ରହଣ କରନ୍ତୁ ।'' ମୁଁ ପ୍ରସ୍ତାବ ଦେଲି ।

''କିନ୍ତୁ କାହିଁକି ? ମୋତେ କାହିଁକି ଆପଣ ଏତେ ସୁନ୍ଦର ବ୍ୟାଗଟି ଦେଇଦେବେ ?''

''କାରଣ' ମୁଁ ଥଟ୍ଟାରେ କହିଲି,'' ''ଏ ବ୍ୟାଗଟି ଯିଏ ପସନ୍ଦ କରିବ, ତାକୁ ଦେଇଦେବି ବୋଲି ମୁଁ ପ୍ରତିଜ୍ଞା କରିଛି ।''

ସେ ହସିଲେ । ରେଷ୍ଟୋରାଁର ଅନ୍ୟମାନେ ବି । ଭଦ୍ରମହିଳା ବ୍ୟାଗଟି ଗ୍ରହଣ କଲେ ମୋଠାରୁ ।

ପ୍ରଥମ ଘଟଣାଟି ୧୯୭୪ରେ ଓ ଦ୍ୱିତୀୟଟି ୧୯୯୨ରେ ଘଟିଥିଲା । ମୋତେ ଯେଉଁ ବୁଢ଼ୀ ବହୁ ସମୟ ତାଙ୍କ ଦୋକାନରେ ଆଶ୍ରୟ ଦେଇଥିଲେ ବା ମୋ'ଠାରୁ ଯେ ପିପିଲି ବ୍ୟାଗଟି ଗ୍ରହଣ କରିଥିଲେ,ସେମାନଙ୍କ ସହିତ ମୋର ଆଉ ଥରେ ସାକ୍ଷାତ୍ ହେବାର ସମ୍ଭାବନା ନାହିଁ । ସେମାନଙ୍କ ନାମ ବା ଠିକଣା ମଧ୍ୟ ମୋତେ ଜଣା ନାହିଁ ।

ଖୁବ୍ ଦୂର ଅନ୍ଧାର ଭିତରେ କେଉଁଠି ମିଞ୍ଜିମିଞ୍ଜି ଦୁଇ ବୁନ୍ଦା ଆଲୁଅ ପରି ଏଇ ସ୍ମୃତି ବେଳେବେଳେ ମୋ ମନ ଭିତରେ ଜାଗି ଉଠେ । ସେ ଆଲୁଅ ଯେମିତି ମଣିଷ ମଣିଷ ଭିତରେ ଚିରନ୍ତନ ସ୍ନେହ ଓ ବନ୍ଧୁତାର !!

